୧ ଲୀପ୍ ପ୍ରାଚ୍ୟ ଗ୍ରନ୍ଥମାଳା ( ଓଡ଼ିଆ )—୧୨

# କୃଷ୍ଣ କେଳି ତରଙ୍ଗିଣୀ

ରଚନା

ଗଜପତି ପୁରୁଷୋତ୍ତମ ଅନଙ୍ଗଭୀମ ଦେବ

ଉତ୍କଳୀୟ ପ୍ରାଚ୍ୟ ଗ୍ରନ୍ଥମାଳା (ଓଡ଼ିଆ)—୧୨

# କୃଷ୍ଣ କେଳି ତରଙ୍ଗିଣୀ

ରଚନା

ଗଜପତି ପୁରୁଷୋତ୍ତମ ଅନଙ୍ଗଭୀମ ଦେବ

ସମ୍ପାଦନା

ଶ୍ରୀମତୀ ପ୍ରମିଳା ମିଶ୍ର, ଏମ୍. ଏ., ରାଷ୍ଟ୍ରଭାଷା କୋବିଦ

ସମ୍ପାଦକ

ସାଂସ୍କୃତିକ ବ୍ୟାପାର ନିର୍ଦ୍ଦେଶାଳୟ

ଭୁବନେଶ୍ୱର-୬

ORISSAN ORIENTAL TEXT SERIES ( ORIYA )—12

# KRSNA KELI TARANGINI

By

Gajapati Purushottama Anangabhima Deva

*Edited by*

Smt. PRAMILA MISHRA, M. A.
Rastrabhasa Kovid

*Editor*

DIRECTORATE OF CULTURAL AFFAIRS, ORISSA
Bhubaneswar-6

ଯଦୁନାଥ ଦାଶ ମହାପାତ୍ର
ମନ୍ତ୍ରୀ
ଶିକ୍ଷା ଓ ପର୍ଯ୍ୟଟନ ଏବଂ ସାଂସ୍କୃତିକ ବ୍ୟାପାର



ଭୁବନେଶ୍ୱର
ତା ୩୦।୩।୭୪

ଓଡ଼ିଶାର ପ୍ରାଚୀନ ସମୃଦ୍ଧ ସାହିତ୍ୟ ଭଣ୍ଡାରକୁ ଖେମୁଣ୍ଡି ଗଙ୍ଗ ରାଜବଂଶର ଦାନ ଅତୁଳନୀୟ । ଏହି ଗଙ୍ଗବଂଶୀୟ ଗଜପତିଗଣ ବହୁ ଓଡ଼ିଆ ପଣ୍ଡିତ, କବି ତଥା ଲେଖକମାନଙ୍କୁ ସାହିତ୍ୟ ସୃଷ୍ଟି ଦିଗରେ ଉତ୍ସାହିତ ଓ ସାହାଯ୍ୟ କରିବା ସଙ୍ଗେ ସଙ୍ଗେ ସେମାନଙ୍କ ମଧ୍ୟରୁ କେତେକ ବିଦ୍ୱାନ୍ ଓ ପ୍ରତିଭାଶାଳୀ ଶାସକ ସ୍ୱୟଂ କାବ୍ୟ, ନାଟକାଦି ରଚନା କରି ଓଡ଼ିଶାର ଅଭିଜାତ କୃଷ୍ଟିକୁ ଅଳଙ୍କୃତ ଓ ଗୌରବମଣ୍ଡିତ କରିଯାଇଛନ୍ତି । ଅଷ୍ଟାଦଶ ଶତାବ୍ଦୀର ମଧ୍ୟଭାଗରେ ଆବିର୍ଭୂତ ହୋଇଥିବା ପ୍ରବଳପରାକ୍ରମୀ ରାଜପତି ପୁରୁଷୋତ୍ତମ ଅନଙ୍ଗଭୀମ ଦେବ ସେମାନଙ୍କ ମଧ୍ୟରୁ ଏକ ଉଲ୍ଲେଖଯୋଗ୍ୟ ପ୍ରତିଭା । ତତ୍କାଳୀନ ବୈଷ୍ଣବୀୟ କୃଷ୍ଣଭକ୍ତି ସ୍ରୋତର ଅନୁଗାମୀ ହୋଇ ସେ "କୃଷ୍ଣ କେଳି ତରଙ୍ଗିଣୀ" ନାମକ ରାଧାକୃଷ୍ଣ ଲୀଳାମୂଳକ ଏକ କ୍ଷୁଦ୍ର ଅଥଚ ମଞ୍ଜୁଳ ଖଣ୍ଡକାବ୍ୟ ରଚନା କରିଛନ୍ତି । କାବ୍ୟଟିର ଭାଷା ଅତ୍ୟନ୍ତ ସରଳ ଓ ଲଳିତ ହୋଇଥିଲେ ହେଁ ରୀତିଯୁଗୀୟ ଅଳଙ୍କାର ପ୍ରଭାବରୁ ସମ୍ପୂର୍ଣ୍ଣ ମୁକ୍ତ ନୁହେଁ ।

ଓଡ଼ିଶାର ଲୁପ୍ତ ପ୍ରାଚୀନ ସାହିତ୍ୟିକ ବିଭବର ପୁନରୁଦ୍ଧାର କରି ଲୋକଲୋଚନ ଗୋଚରୀଭୂତ କରିବାପାଇଁ ଓଡ଼ିଶା ସରକାରଙ୍କର ସାଂସ୍କୃତିକ ବ୍ୟାପାର ବିଭାଗ ଆନୁକୂଲ୍ୟରେ ଗଠିତ ହୋଇଥିବା ପ୍ରକାଶନୀ ସଂସ୍ଥା ପକ୍ଷରୁ ସମ୍ପାଦିକା ଶ୍ରୀମତୀ ପ୍ରମିଳା ମିଶ୍ର, ଏମ୍. ଏ. ଙ୍କ ଦ୍ୱାରା ଉକ୍ତ କୃଷ୍ଣକାବ୍ୟର ପ୍ରସ୍ତୁତ ସଂସ୍କରଣଟି ସମ୍ପାଦିତ ହୋଇ "ଉତ୍କଳୀୟ ପ୍ରାଚ୍ୟ ଗ୍ରନ୍ଥମାଳା"ର ଦ୍ୱାଦଶ ଗ୍ରନ୍ଥରୂପେ ପ୍ରଥମ ପ୍ରକାଶ ଲାଭ କରିବାକୁ ଯାଉଛି । ଏହାର ମୁଖବନ୍ଧରେ ସମ୍ପାଦିକା ଶ୍ରୀମତୀ ମିଶ୍ର ଗଜପତି କବିଙ୍କର ପରିଚୟ ଓ କାବ୍ୟର ବୈଶିଷ୍ଟ୍ୟ ସମ୍ବନ୍ଧରେ ଯଥାରୀତି ଆଲୋଚନା କରିଛନ୍ତି ।

ଆଶାକରେ, କାବ୍ୟଟି ଆତ୍ମପ୍ରକାଶ ଲଭିକଲେ ଓଡ଼ିଆ ସାହିତ୍ୟ ତଥା ଇତିହାସ ପରିପୁଷ୍ଟ ହେବା ସଙ୍ଗେ ସଙ୍ଗେ ସୀମିତ କଳେବର ଓ ପରିସର ମଧ୍ୟରେ ଗତ କେତେ ବର୍ଷ ଧରି ସଫଳତାର ସହ ଅଗ୍ରଗତି କରି ଆସୁଥିବା ଏହି 'ପ୍ରକାଶନୀ ସଂସ୍ଥା' ମଧ୍ୟ ଲୋକ ସମର୍ଥନ ଲାଭ କରି ଜାତୀୟ କୃଷ୍ଟିର ଉନ୍ମୋଚନରେ ଉତ୍ତରୋତ୍ତର ଉନ୍ନତି ଲାଭ କରିବ ।

ସ୍ୱା—ଯଦୁନାଥ ଦାଶ ମହାପାତ୍ର
ତା ୩୦।୩।୭୪

# ପ୍ରସ୍ତାବନା

ଗଜପତି ଶ୍ରୀ ପୁରୁଷୋତ୍ତମ ଅନଙ୍ଗଭୀମ ଦେବ କୃତ 'କୃଷ୍ଣ କେଳି ତରଙ୍ଗିଣୀ' ଏକ ମଧୁର ରସାତ୍ମକ କୃଷ୍ଣକାବ୍ୟ । ରାଜ୍ୟ ସଂଗ୍ରହାଳୟରେ ଥିବା ଏକମାତ୍ର କାଗଜ ପ୍ରତିଲିପିର ଅବଲମ୍ବନରେ ଏହା ସମ୍ପାଦିତ ହୋଇଅଛି । ଦଶଗୋଟି ଛାନ୍ଦରେ ଆତ୍ମାରାମ ଶ୍ରୀକୃଷ୍ଣଙ୍କର ଏକ ମଧ୍ୟାହ୍ନଲୀଳା ଏଥିରେ ବର୍ଣ୍ଣିତ ହୋଇଅଛି । ବିଷୟବସ୍ତୁ ସଂକ୍ଷିପ୍ତ ତଥା କଳେବର କ୍ଷୁଦ୍ର ହୋଇଥିଲେ ମଧ୍ୟ କାବ୍ୟଟି କୃଷ୍ଣ କେଳି ରସର ଏକ ଅସରନ୍ତି ତରଙ୍ଗିଣୀ । ଚମତ୍କାର କଳ୍ପନାବିଳାସ, ସାବଲୀଳ ଭାଷା, ଅନୁପମ ବର୍ଣ୍ଣନା ଶୈଳୀ ତଥା ରୀତିଯୁଗୀୟ ବିଭିନ୍ନ ଅଳଙ୍କାର ବିଭୂଷିତ ଏହି କାବ୍ୟ ପାଠକକୁ ରାଧାକୃଷ୍ଣ ପ୍ରେମର ଅଶ୍ରାଦ୍ରୟ ମାଦକତା ଆସ୍ୱାଦ କରିବାକୁ ଯେ ସମର୍ଥ କରାଇବ, ଏଥିରେ ସନ୍ଦେହ ନାହିଁ । ସାଂସ୍କୃତିକ ବ୍ୟାପାର ନିର୍ଦ୍ଦେଶାଳୟର ପ୍ରକାଶନୀ ସଂସ୍ଥା ପକ୍ଷରୁ ପ୍ରକାଶଲାଭ କରୁଥିବା 'ଉତ୍କଳୀୟ ପ୍ରାଚ୍ୟ ଗ୍ରନ୍ଥମାଳା'ର ଏହା ଦ୍ୱାଦଶ ଅବଦାନ ।

ସ୍ୱା—ଅକ୍ଷୟ କୁମାର ବିଶ୍ୱାଳ
ନିର୍ଦ୍ଦେଶକ
ପର୍ଯ୍ୟଟନ ଓ ସାଂସ୍କୃତିକ ବ୍ୟାପାର ନିର୍ଦ୍ଦେଶାଳୟ

ଭୁବନେଶ୍ୱର
ତା ୬ । ୩ । ୭୪

# ଉପକ୍ରମଣିକା

ଭକ୍ତିକାଳର ବିକାଶର ବହୁପୂର୍ବରୁ ଶ୍ରୀକୃଷ୍ଣ ଉପାସନା ଅନେକ ରୂପରେ ସମଗ୍ର ଭାରତରେ ପଲ୍ଲବିତ ଓ ପୁଷ୍ପିତ ହୋଇଥିଲା । ଏହାଫଳରେ ଭକ୍ତିକାଳର ସର୍ବାପେକ୍ଷା ମହତ୍ତ୍ୱପୂର୍ଣ୍ଣ ସାହିତ୍ୟ ଶ୍ରୀକୃଷ୍ଣୋପାସକଙ୍କ ଦ୍ୱାରା ହିଁ ସୃଷ୍ଟି ହୋଇଅଛି । କମନୀୟ କିଶୋରମୂର୍ତ୍ତି ଶ୍ରୀକୃଷ୍ଣ ହିଁ ଏହି ଭକ୍ତ ସଂପ୍ରଦାୟର ଉପାସ୍ୟ ଥିଲେ । ସେହି ଶୃଙ୍ଗାରମୂର୍ତ୍ତି ଶ୍ରୀକୃଷ୍ଣଙ୍କର ନିତ୍ୟରସମୟୀ ଲୀଳାସମୂହର ନିତ୍ୟସଙ୍ଗିନୀ ଶ୍ରୀରାଧା ମଧ୍ୟ ଉପାସ୍ୟର ଆସନ ଉପରେ ଅଧିରୂଢ଼ା ଥିଲେ । ମୋଟ ଉପରେ ସେହି ସମୟରେ ଶ୍ରୀରାଧାକୃଷ୍ଣଙ୍କର ଉପାସନା ହିଁ ଯୁଗଧର୍ମ ଥିଲା । ଏହି ଦୁଇଜଣଙ୍କର ପ୍ରେମଲୀଳାକୁ ଆଶ୍ରୟ କରି ଏହାର ପୂର୍ବବର୍ତ୍ତୀ ରସିକକବି ଜୟଦେବ, ବିଦ୍ୟାପତି ଆଦିଙ୍କର ଅନୁଗମନରେ କୋଟି କୋଟି ଭକ୍ତ ଏବଂ ରସିକ ଜନ ରସଲୀଳା ଗାନକରି ଭାବବିଭୋର ହୋଇଯାଉଥିଲେ । ଅସଂଖ୍ୟ ଅନନ୍ତ ଲୀଳାର ସେହି ଅଗାଧ ପ୍ରେମସିନ୍ଧୁରେ ନିମଜ୍ଜିତ ଉପାସକଗଣ ଯେତେବେଳେ ସେହି ଅନୁପମ ମାଧୁର୍ଯ୍ୟ, ଲୋକୋତ୍ତର ଲାବଣ୍ୟ ତଥା ପରମ ପ୍ରେମୋଲ୍ଲାସକୁ ବାଣୀ ମାଧ୍ୟମରେ ପ୍ରକାଶ କରିବାକୁ ଲାଗିଲେ ସେତେବେଳେ ସଂପୂର୍ଣ୍ଣ ସାହିତ୍ୟ ସରସ ଓ ଜୀବନ୍ତ ହୋଇ ଉଠିଲା । ଏତାଦୃଶ ଅସୀମ କୃଷ୍ଣ ସାହିତ୍ୟ ସାଗର ମଧ୍ୟରେ ଓଡ଼ିଶାର ଗଜପତି କବି ପୁରୁଷୋତ୍ତମ ଅନଙ୍ଗଭୀମ ଦେବଙ୍କ ରଚିତ "କୃଷ୍ଣ କେଳି ତରଙ୍ଗିଣୀ" କାବ୍ୟ ଏକ ଜଳବିନ୍ଦୁ ।

**କବି ପରିଚୟ—**

କବି ଗଜପତି ପୁରୁଷୋତ୍ତମ ଅନଙ୍ଗଭୀମ ଦେବ କାବ୍ୟର ପ୍ରତ୍ୟେକ ଗୀତର ଶେଷରେ ସ୍ୱପରିଚୟ ନିମ୍ନଲିଖିତ ଭାବରେ ପ୍ରଦାନ କରିଅଛନ୍ତି—

"ସେ ରାଧାକୃଷ୍ଣ ଚରଣ ପଙ୍କଜେ ନତି
ପୁରୁଷୋତ୍ତମ ଅନଙ୍ଗଭୀମ ନୃପତି ।"

× × ×

"ପୁରୁଷୋତ୍ତମ ଅନଙ୍ଗଭୀମ ଦେବ
ଭଣିଲେ ନୃପ କେଶରୀ ।"

× × ×

"ଗଙ୍ଗବଂଶ ପୟୋଧି ସୁଧାକର
ପୁରୁଷୋତ୍ତମ ଦେବ ନୃପବର ।"

× × ×

"ସ୍ଵରୁ ଚରଣାରବିନ୍ଦ ବନ୍ଦନ
କରି ବାସୁଦେବ ନୃପ ନନ୍ଦନ
ଏ ଗୀତରେ ଭଣି,
ପୁରୁଷୋତ୍ତମ ଦେବ ନୃପମଣି ।"
× × ×
"ବିଜୟ ନଗର ନରପତି
ପୁରୁଷ ଉତ୍ତମ ନାମ ଖ୍ୟାତି
କ୍ଷତ୍ରିୟାଂଶ ଗଙ୍ଗବଂଶ ଅବତଂସ
ନୃପ ସାରସ ବାସର ପତି
ରାଧାକୃଷ୍ଣ ଭାବ
ମନେକରି ଭବାର୍ଣ୍ଣବ ନାବ,
ଭଣିଲେ ଅନଙ୍ଗଭୀମ ଦେବ ।"

ଏଥିରୁ ଜଣାଯାଏ ଯେ କାବ୍ୟ ରଚୟିତା ଗଜପତି ପୁରୁଷୋତ୍ତମ ଅନଙ୍ଗଭୀମ ଦେବ ପ୍ରସିଦ୍ଧ ଗଙ୍ଗରାଜ ବଂଶଜ ବାସୁଦେବ ନରପତିଙ୍କର ପୁତ୍ର ଏବଂ ବିଜୟ ନଗରର ଅଧିପତି ଥିଲେ ।

ଉତ୍କଳର ଇତିହାସ ଆଲୋଚନା କଲେ ବିଭିନ୍ନ ସମୟରେ ବିଭିନ୍ନ ରାଜବଂଶୀୟ ବହୁ ପୁରୁଷୋତ୍ତମ ତଥା ଅନଙ୍ଗଭୀମ ନାମଧାରୀ ଶାସକଗଣ ଓଡ଼ିଶାରେ ରାଜତ୍ଵ କରିଥିବା ଜଣାଯାଏ । ଭୋଇ ବଂଶର ଗଜପତି ରାମଚନ୍ଦ୍ର ଦେବଙ୍କ ପୁତ୍ର ପୁରୁଷୋତ୍ତମ ଦେବ ଖ୍ରୀ: ୧୬୦୭ ରୁ ଖ୍ରୀ: ୧୬୨୨ ପର୍ଯ୍ୟନ୍ତ ଖୋର୍ଦ୍ଧାର ଶାସକ ଥିଲେ ଏବଂ ପ୍ରସିଦ୍ଧ କେଶରୀ ବଂଶରେ ଅନଙ୍ଗଭୀମ ଦେବ ନାମଧାରୀ ଜନୈକ ରାଜା ଶାସନ କରିଥିବା ଜଣାଯାଏ । ଏହାଛଡ଼ା ଉତ୍କଳର ବିଖ୍ୟାତ ଗଙ୍ଗ ବଂଶର ଅନ୍ୟତମ ଦାୟାଦ ରାଜେଶ୍ଵରଗଙ୍ଗ ଦେବଙ୍କ ପୁତ୍ର ଅନଙ୍ଗଭୀମ ଦେବ (୨ୟ) କଟକରେ ଶାସନ କରୁଥିଲେ ଏବଂ ସେ ପ୍ରଜାମାନଙ୍କର ଉପକାରାର୍ଥେ ବହୁ ଉନ୍ନତିକର କାର୍ଯ୍ୟ କରିବା ସଙ୍ଗେ ସଙ୍ଗେ ଅଦ୍ୟାପି ବିଦ୍ୟମାନ ଥିବା ପୁରୀର ବିଶାଳ ଜଗନ୍ନାଥ ମନ୍ଦିର ନିର୍ମାଣ କାର୍ଯ୍ୟ ଶେଷ କରିଥିଲେ ବୋଲି ଜନଶ୍ରୁତି ଅଛି । ଉକ୍ତ ଗଙ୍ଗ ବଂଶରେ ରାଜରାଜଙ୍କ ପୁତ୍ର ଅନଙ୍ଗଭୀମ ଦେବ (୩ୟ) ( ଖ୍ରୀ: ୧୨୧୧ ରୁ ଖ୍ରୀ: ୧୨୩୮ ) ମହାପରାକ୍ରମଶାଳୀ ଥିଲେ ଏବଂ ବାରବାଟୀ କିଲ୍ଲା ତୋଳାଇଥିଲେ ବୋଲି ମାଦଳାପାଞ୍ଜିରେ ଅଛି । ଗଙ୍ଗ ବଂଶର ଅବସାନ ପରେ ମଧ୍ୟ ସୂର୍ଯ୍ୟ ବଂଶରେ କପିଳେନ୍ଦ୍ର ଦେବଙ୍କ ଅନ୍ତେ ଗଜପତି ପୁରୁଷୋତ୍ତମ ଦେବ ଖ୍ରୀ: ୧୪୬୬ ରୁ ଖ୍ରୀ: ୧୪୯୭ ପର୍ଯ୍ୟନ୍ତ ରାଜ୍ୟ ଶାସନ କରିଥିଲେ ଏବଂ କଟକ ନଗର ତାଙ୍କ ରାଜଧାନୀ ଥିଲା । ସେ ଜଣେ ଦାନୀ, ସାତ୍ଵିକ୍ୟସେବୀ ଓ ଭକ୍ତିପରାୟଣ ରାଜା ଥିଲେ ।

ଆଲୋଚ୍ୟ ଗଙ୍ଗ ବଂଶରେ ମଧ୍ୟ କୁମାର ପୁରୁଷୋତ୍ତମ ଦେବ ନାମକ ଜଣେ ରାଜା କଳିଙ୍ଗ ରାଜା ନରସିଂହ ଦେବଙ୍କ ରାଜତ୍ଵର ସପ୍ତମାଙ୍କରେ ପାରଳାଖେମୁଣ୍ଡିରେ ଶାସନ

କରୁଥିଲେ । ସେ ଆତ୍ରେୟ ଗୋତ୍ର ସମ୍ଭୂତ ଥିଲେ ବୋଲି ଶ୍ରୀକାକୁଲମ୍ ଜିଲ୍ଲାର ମନ୍ଦିରରେ ଥିବା ଏକ ଶିଳାଲେଖରୁ ଜଣାଯାଇଥାଏ¹ ।

ତେଣୁ "କୃଷ୍ଣ କେଳି ତରଙ୍ଗିଣୀ" କାବ୍ୟର ରଚୟିତା ଗଜପତି ପୁରୁଷୋତ୍ତମ ଅନଙ୍ଗଭୀମ ଦେବଙ୍କର ପରିଚୟ ଏବଂ ଶାସନକାଳ ସମ୍ବନ୍ଧରେ ସାଧାରଣରେ ସନ୍ଦେହ ସୃଷ୍ଟି ହେବା ସ୍ୱାଭାବିକ । ଏତାଦୃଶ ସନ୍ଦେହର କିୟଦଂଶ ମାତ୍ର ନିରାକରଣ କରିଛନ୍ତି କବି ଏହି କାବ୍ୟଟିରେ । ସେ ପୂର୍ବୋକ୍ତ କୌଣସି ପୁରୁଷୋତ୍ତମ ଦେବ କିମ୍ବା ଅନଙ୍ଗଭୀମ ଦେବ ନୁହନ୍ତି ଏବଂ ସେ ଦକ୍ଷିଣ ଓଡ଼ିଶାର ତଦାନୀନ୍ତନ ବଡ଼ଖେମୁଣ୍ଡି ରାଜ୍ୟ ଅନ୍ତର୍ଗତ ବିଜୟ ନଗରର ଅଧିପତି ଏବଂ ପୁରୁଷୋତ୍ତମ ଅନଙ୍ଗଭୀମ କେଶରୀ ନାମରେ ଖ୍ୟାତ ଥିବା କାବ୍ୟରେ କବିଙ୍କର ଭଣିତାରୁ ସ୍ପଷ୍ଟ ଜଣାଯାଏ ।

ଆଲୋଚ୍ୟ କାବ୍ୟରୁ ମିଳୁଥିବା ଏତିକମାତ୍ର ପରିଚୟ ବ୍ୟତୀତ ଅନ୍ୟାନ୍ୟ କେତେକ ଗ୍ରନ୍ଥରୁ ଏହି କବିଙ୍କର ବ୍ୟକ୍ତିତ୍ୱ, ବିଖ୍ୟାତ ଗଙ୍ଗବଂଶାବଳୀ, ତାଙ୍କ ରାଜତ୍ୱକାଳ ଏବଂ ଶାସନ ଇତ୍ୟାଦି ସମ୍ବନ୍ଧରେ ପ୍ରମାଣସମ୍ବଳିତ ବହୁ ବିବରଣୀ ମିଳେ । ତନ୍ମଧ୍ୟରୁ ତାଙ୍କର ପୃଷ୍ଠପୋଷକତାରେ ପରିପୁଷ୍ଟ ଗଞ୍ଜାମ ଜିଲ୍ଲାଧିବାସୀ ଜନୈକ ପ୍ରସିଦ୍ଧ ପଣ୍ଡିତ ବାସୁଦେବ ରଥ ସୋମଯାଜୀଙ୍କ ଦ୍ୱାରା ରଚିତ "ଗଙ୍ଗବଂଶାନୁଚରିତମ୍" ନାମକ ସଂସ୍କୃତ ଚମ୍ପୂଗ୍ରନ୍ଥ ଅନ୍ୟତମ² । କବିଙ୍କର ରାଜସଭା ମଣ୍ଡନ କରୁଥିବା ଉକ୍ତ ସୋମଯାଜୀ ଖ୍ରୀ: ୧୭୫୮—୭୭ ମଧ୍ୟରେ ଏହି ବିଖ୍ୟାତ ଚମ୍ପୂକାବ୍ୟଟି ସ୍ୱୀୟ ପୃଷ୍ଠପୋଷକଙ୍କର ସନ୍ତୋଷବିଧାନ ନିମିତ୍ତ ରଚନାକରି ତହିଁରେ କଟକର ଗଙ୍ଗବଂଶ, ଖଲିକୋଟ, ଆଠଗଡ଼, ଧରାକୋଟ ପ୍ରଭୃତିର ରାଜବଂଶ, ସେମାନଙ୍କର ରାଜଧାନୀ ଇତ୍ୟାଦିର ନିଖୁଣ ଚିତ୍ରସହ ତତ୍କାଳୀନ ଖିମୁଣ୍ଡି ଗଙ୍ଗ ରାଜବଂଶର ଏକ ବିସ୍ତୃତ ଧାରାବାହିକ ବିବରଣୀ ପ୍ରଦାନ କରିଅଛନ୍ତି । ତେଣୁ ସେଥିରୁ ଖିମୁଣ୍ଡି ଗଙ୍ଗବଂଶାବତଂସ ଗଜପତି ଅନଙ୍ଗଭୀମ ପୁରୁଷୋତ୍ତମ ଦେବଙ୍କର ରାଜତ୍ୱ, ବଳପରାକ୍ରମ, ପ୍ରତିଭା ତଥା ରାଜତ୍ୱ କାଳର ବହୁ ବିଶିଷ୍ଟ ଘଟଣାବଳୀ ଇତ୍ୟାଦିର ବିଶଦ ବର୍ଣ୍ଣନା ମିଳେ ।

---

୧ । "In one of the stone inscriptions in the temple of Srikurmam ( Srikakulam District ) mention is made that in the 7th regnal year of Narasingha Deva there lived a king in Kimmidi ( Khimundi ) called Kumar Purusottam Deva of Atreya gotra, who donated a perpetual lamp to the God Kumar Svamin on the eve of his son Indra Deva's death." ( Vide S. I. I., Vol. V, No. 12199, A. R. No. 337 of 1896 )
( History of the Gangas, Part II, S. N. Rajguru, P. 44 )

୨ । ଏହି ଐତିହାସିକ ଚମ୍ପୂକାବ୍ୟ ଗ୍ରନ୍ଥଟି ସମ୍ପାଦିତ ହୋଇ ବର୍ତ୍ତମାନ ସାଂସ୍କୃତିକ ବ୍ୟାପାର ନିର୍ଦ୍ଦେଶାଳୟ ଦ୍ୱାରା ପ୍ରକାଶିତ ହେବାକୁ ଯାଉଅଛି ।

ପ୍ରଥମତଃ, ଲେଖକ ସୋମଯାଜୀଙ୍କ ପ୍ରଦତ୍ତ ଖିମୁଣ୍ଡି ଗଙ୍ଗରାଜବଂଶର ପରିଚୟ ସଂକ୍ଷେପରେ ନିଆଗଲେ ଜଣାଯାଏ ଯେ ଉତ୍କଳର ଗଙ୍ଗବଂଶର ଶେଷରାଜା କଜ୍ଜଳଭାନୁ ରାଜଧାନୀ କଟକରୁ କପିଳେନ୍ଦ୍ରଦେବଙ୍କ ଦ୍ୱାରା ବିତାଡ଼ିତ ହୋଇ ଜୀବନର ଶେଷାବସ୍ଥାରେ ଦକ୍ଷିଣ ଓଡ଼ିଶାନ୍ତର୍ଗତ ଗୁଡ଼ାରି କଟକରେ ସ୍ୱ ରାଜଧାନୀ ପ୍ରତିଷ୍ଠା କରିଥିଲେ[୧] । ଏହିଠାରୁ ଖିମୁଣ୍ଡି ଗଙ୍ଗ ରାଜବଂଶର ଆରମ୍ଭ ଏବଂ ଏହାର ସମସ୍ତ ପରବର୍ତ୍ତୀ ନରପତିଗଣ ଉତ୍କଳର ପ୍ରଖ୍ୟାତ ରାଜା ଅନଙ୍ଗଭୀମ ଦେବଙ୍କ ସ୍ମୃତିରକ୍ଷା ନିମିତ୍ତ ସ୍ୱୟଂ ପୁରୁଷାନୁକ୍ରମେ 'ଅନଙ୍ଗଭୀମ' ପଦବୀ ଧାରଣ କରିଥିଲେ[୨] । କଜ୍ଜଳଭାନୁଙ୍କ ମୃତ୍ୟୁର କିଛିକାଳ ପରେ ସୁର୍ଣ୍ଣଭାନୁ ନାମକ ଅତ୍ୟନ୍ତ ପ୍ରତାପଶାଳୀ ନରପତି ଏବଂ ତାଙ୍କ ଅନ୍ତେ ପୁତ୍ର କାଳକଣ୍ଠ ଦେବ ରାଜ୍ୟଶାସନ କରିଥିଲେ । ତାଙ୍କର ଚୂଡ଼ଙ୍ଗ ଓ ହରିମଣି ଦେବ ନାମକ ଦୁଇଗୋଟି ପୁତ୍ର ଥିଲେ । ଚୂଡ଼ଙ୍ଗ ଦେବଙ୍କ ରାଜତ୍ୱ ପରେ ତାଙ୍କ ପୁତ୍ର ନୃସିଂହ ଦେବ ଏବଂ ତାଙ୍କର ମୃତ୍ୟୁ ଅନ୍ତେ ପୁତ୍ର ଅନନ୍ତ ଦେବ ରାଜ୍ୟଭାର ଗ୍ରହଣ କରିଥିଲେ । ଅନନ୍ତ ଦେବଙ୍କ ପୁତ୍ର ପଦ୍ମନାଭ ଦେବ ଜଣେ ଅତି ସୁଖ୍ୟାତିସମ୍ପନ୍ନ ଶାସକ ହୋଇଥିଲେ ଏବଂ ତାଙ୍କ ଅନ୍ତେ ତାଙ୍କ ପୁତ୍ର ପୀତାମ୍ବର ଦେବ ଶାସନ କରିଥିଲେ । ପୀତାମ୍ବର ଦେବଙ୍କ

---

୧ । ଏହି ସହରର ଭଗ୍ନାବଶେଷ ବର୍ତ୍ତମାନ ଦକ୍ଷିଣ ଓଡ଼ିଶାର କୋରାପୁଟ ଜିଲ୍ଲା ଅନ୍ତର୍ଗତ ରାୟଗଡ଼ା ସବ୍‌ଡିଭିଜନର ଗୁଡ଼ାରି ଗ୍ରାମରେ ଦେଖିବାକୁ ମିଳେ ।

୨ । ଲୀଳାବତୀ—ନାଥ ପୃଚ୍ଛାମି, ମଦନକାମଦେବାତ୍ମଜେ ଅନଙ୍ଗଭୀମାତ୍ମଦେ ଗତବତ୍ୟପି ଇଦାନୀନ୍ତନା
ଗୁଡ଼ାରିକଟକବାସିନଃ ସର୍ବେ ଭୂପା ଯଦନଙ୍ଗଭୀମପଦଭାଜୋ ଭବନ୍ତି ।
ତତ୍ର କିଂ ବୀଜମ୍ ?

ବିଦ୍ୟାର୍ଣ୍ଣବଃ—କମଳାମ୍ବୁଜମ୍, ତସ୍ୟ ଶବ୍ଦସ୍ୟ ପ୍ରବୃତ୍ତିନିମିତ୍ତବଲାତ୍ ତଦ୍‌ବଂଶ୍ୟେଷୁ
ତଦ୍‌ବ୍ୟପଦେଶୋ ପ୍ରକ୍ରାନ୍ତ ଏବ ।

ଲୀଳାବତୀ—ତନ୍ନ, ତତ୍ର ଶବ୍ଦସ୍ୟ କିଂ ପ୍ରବୃତ୍ତି ନିମିତ୍ତମ୍ ?

ବିଦ୍ୟାର୍ଣ୍ଣବଃ—"ଯୋ ଜାତଃ ସୁରଭୀମ ସଂଶୟକରଃ ସୌନ୍ଦର୍ଯ୍ୟ ଶୌର୍ଯ୍ୟୋଦୟାତ୍
ଜସାଦେବମନଙ୍ଗଭୀମପଦବୀଂ ବମ୍ଭୋସ୍ତିନାଲମ୍ବିତାମ୍ ?
ଅଦ୍ୟାପ୍ୟେଷୁ ତଥାବଂଶ୍ୟେଷୁ ଚ ତତଃ ଶବ୍ଦ ପ୍ରବୃତ୍ତେଃ ପୁନଃ ।
ହେତୌ ଜାଗରତି ସାକୃତୌ ନ ଘଟନଂ ଚନ୍ଦ୍ରାନନେ ଚିନ୍ତ୍ୟତାମ୍ ।"

( ଗଙ୍ଗବଂଶାନୁଚରିତ ଚମ୍ପୂ, ୮ମ ପରିଚ୍ଛେଦ, ୩୬ ଶ୍ଳୋକ )

ଡ. ରଙ୍ଗାଚାର୍ଯ୍ୟଙ୍କ ଦ୍ୱାରା ସଂକଳିତ 'Topographical list of inscriptions of the Madras Presidency' ରେ ମଧ୍ୟ ଗଙ୍ଗବଂଶର ପ୍ରତ୍ୟେକ ରାଜାଙ୍କ ନାମ ସହ ଏହି ପାରମ୍ପରିକ ଅନଙ୍ଗଭୀମ ପଦବୀ ସଂଯୁକ୍ତ ହୋଇଥିବା ଦେଖାଯାଏ ଏବଂ ଏହା ଚମ୍ପୂକାର ବାସୁଦେବ ସୋମଯାଜୀଙ୍କର ଉପର୍ଯ୍ୟୁକ୍ତ ଉକ୍ତିକୁ ସମର୍ଥନ କରୁଅଛି । ( Vol. I, Ganjam District, PP. 676—696. No. 77—Ananta Anaṅga Bhīma Deva Keśarī. No. 59·60. 80—Padmanābha Anaṅga Bhīma Keśarī. No. 72—Pitāmbara Anaṅga Bhima Deva. No. 58. 267— Vīra Srī Puruṣottama Anaṅga Bhīma Deva Kesari.

ରାଜତ୍ୱର ଅବସାନରେ ତାଙ୍କ ବୈମାତୃକ ଭ୍ରାତା ବାସୁଦେବ ପ୍ରସିଦ୍ଧ ଗଙ୍ଗବଂଶ ରାଜସିଂହାସନ ଅଳଙ୍କୃତ କରିଥିଲେ । ସେ ଅତ୍ୟନ୍ତ ଭଗବଦ୍‌ଭକ୍ତ ଥିଲେ ଏବଂ ପ୍ରତ୍ୟହ ଲକ୍ଷସଂଖ୍ୟକ ବିଷ୍ଣୁନାମ ଜପ କରୁଥିଲେ । ବାସୁଦେବ ତାଙ୍କର ଶେଷ ଜୀବନକୁ ଗୁରୁ, ବ୍ରାହ୍ମଣ, ଦେବତା ଓ ଅତିଥିଙ୍କ ସେବା ପୂଜା ତଥା ତୀର୍ଥଭ୍ରମଣାଦି ବହୁ ଧର୍ମକାର୍ଯ୍ୟରେ ଅତିବାହିତ କରିଥିଲେ[1] । ଏହି ବାସୁଦେବଙ୍କର ପୁତ୍ର ଥିଲେ ଆମର ଆଲୋଚ୍ୟ କବି ପୁରୁଷୋତ୍ତମ ଅନଙ୍ଗଭୀମ ଦେବ ଏବଂ ପିତାଙ୍କର ମୃତ୍ୟୁପରେ ତାଙ୍କର ଏକ ସୁଯୋଗ୍ୟ ସନ୍ତାନ ହିସାବରେ ସେ ଖିମୁଣ୍ଡି ରାଜସିଂହାସନ ଅଳଙ୍କୃତ କରିଥିଲେ । ଏଥିରୁ କବିଙ୍କର ପୂର୍ବ ରାଜବଂଶାବଳୀ ନିମ୍ନ ପ୍ରକାରେ ଜଣାଗଲା—




---

୧ । "ବୈମାତ୍ରୋ ଯସ୍ତଦାସ୍ତଃ ସ୍ୱଜନକୁଲଗୁଣଗ୍ରାମବିଶ୍ରାମ ସୀମା
କଲ୍ୟାଣଭ୍ରାଜମାନାନୁପମସୁଭଗତା ସାଧୁ ସଙ୍ଗର ଭୂମିଃ ।
ଲକ୍ଷଂ କଂସାରି ନାମ୍ନାଂ ସତତମନୁଜପନ ବାସୁଦେବାଭିଧାନୋ
ରାଜ୍ୟଂ ଭ୍ରାତୁର୍ମଦାସ୍ତଃ ସ୍ୱମିବସୁଖମପାତ୍ ଯୌବରାଜ୍ୟୋଽଭିଷିକ୍ତଃ ।"

( ଗଙ୍ଗବଂଶାନୁଚରିତ ଚମ୍ପୂ, ୯ମ ପରିଚ୍ଛେଦ, ଶ୍ଳୋକ—୪ )

( ଉକ୍ତ ଶ୍ଳୋକରୁ ଆଲୋଚ୍ୟ କବି ଅନଙ୍ଗଭୀମଙ୍କର ପିତା ମଧ୍ୟ ଜଣେ ବରିଷ୍ଠ କୃଷ୍ଣଭକ୍ତ ଥିବାର ଜଣାଯାଏ । )

ଉକ୍ତ ଚମ୍ପୂକାବ୍ୟରେ ପଣ୍ଡିତ ସୋମଯାଜୀ ସ୍ୱ ଆଶ୍ରୟଦାତା ଅନଙ୍ଗଭୀମ ଦେବଙ୍କର ଉଚ୍ଛ୍ୱସିତ ପ୍ରଶଂସା ଓ ସ୍ତୁତିଗାନ କରିଛନ୍ତି--

"ସମସ୍ତ ଗଙ୍ଗବଂଶରତ୍ନାକରଃ × × × ଅନବରତ ପ୍ରଣାମଲାଳସୋପନ- ମଦଙ୍ଗ-ବଙ୍ଗ-କଳିଙ୍ଗ-ଲାଟ-କର୍ଣ୍ଣାଟ-ସୁହ୍ମ-ସୌବୀରଗୌଡ଼ଦ୍ରାବିଡ଼ାଦି ଦେଶବିଶେଷ ଭୂପକୁଳ × × × ସକଳ ସିଦ୍ଧାନ୍ତନିଷ୍ଣାଧିଷ୍ଠାନତାପ୍ରତିଷ୍ଠିତ ଜ୍ଞାନବିଜ୍ଞାନ ପରିନିଷ୍ଠିତ-ନିଖିଳ ଧରଣୀ- ମଣ୍ଡଳମଣ୍ଡନାୟମାନ ପଣ୍ଡିତମଣ୍ଡଳୀପୁଣ୍ଡରୀକ-ଷଣ୍ଡ-ପ୍ରମୋଦ-ହିୟା-ପ୍ରଚଣ୍ଡ ମାର୍ତ୍ତଣ୍ଡମଣ୍ଡଳଃ × × × ପୁରୁଷୋତ୍ତମ ନାମଧେୟଃ କ୍ଷିତିପତିଃ ଖିମୁଣ୍ଡି ନାମକେ ଜନପଦେ ବିଜୟନଗରୀଂ ନାମରାଜଧାନୀମଧ୍ୟାସ୍ୟ ଧର୍ମେଣ ପାଳୟତି ।" (ଗ. ବ. ଚ. ଚମ୍ପୂ, ୭ମ ପରିଚ୍ଛେଦ ) । ଅର୍ଥାତ୍ ଗଙ୍ଗବଂଶରତ୍ନାକର ବିଖ୍ୟାତ ନରପତି ଶ୍ରୀ ପୁରୁଷୋତ୍ତମ ଅଙ୍ଗ-ବଙ୍ଗ-କଳିଙ୍ଗ-ଲାଟ-କର୍ଣ୍ଣାଟ-ସୁହ୍ମ ସୌବୀରଗୌଡ଼ଦ୍ରାବିଡ଼ାଦି ଦେଶ ରାଜାମାନଙ୍କ- ଠାରୁ ଅନୁକ୍ଷଣ ପ୍ରଣାମ ପ୍ରାପ୍ତହୋଇ ତଥା ସମଗ୍ର ଧରଣୀମଣ୍ଡଳ ମଣ୍ଡନ କରୁଥିବା ସର୍ବସିଦ୍ଧାନ୍ତବାଦୀ ପଣ୍ଡିତମଣ୍ଡଳୀ ଦ୍ୱାରା ପରିବେଷ୍ଟିତ ହୋଇ ଖିମୁଣ୍ଡି ଜନପଦ ଅନ୍ତର୍ଗତ ବିଜୟନଗରୀ ନାମକ ରାଜଧାନୀରେ ଧର୍ମାନୁଯାୟୀ ପ୍ରଜା ପାଳନ କରୁଛନ୍ତି । ଏଥିରୁ ଆଲୋଚ୍ୟ କବି ଯେଉଁ ବିଜୟନଗରର ଅଧିପତି ଥିଲେ ତାହା ଆନ୍ଧ୍ରପ୍ରଦେଶାନ୍ତର୍ଗତ ବିଶାଖାପାଟଣା ଜିଲ୍ଲାର ବିଜୟନଗରଠାରୁ ସମ୍ପୂର୍ଣ୍ଣ ପୃଥକ୍ ଏବଂ ଏହା ଦକ୍ଷିଣ ଓଡ଼ିଶାର ଖିମୁଣ୍ଡି ରାଜ୍ୟ ଅନ୍ତର୍ଗତ ଥିବା ସ୍ପଷ୍ଟ ଜଣାଯାଏ । ଏହି ନୃପତିଙ୍କର ରାଜତ୍ୱର ବହୁମୁଖୀ ପ୍ରଶଂସାରେ କବି ସୋମଯାଜୀଙ୍କର ଲେଖନୀ ସତତ ଯତ୍ନଶୀଳ ହୋଇଉଠିଛି ।

"ତସ୍ୟାନ୍ତରୁଙ୍ଗଗଙ୍ଗବଂଶକଶରୀରଙ୍କୁବିବିଭାରସ୍ୟ ପୂରୁଷମାନ ଦୁରାପମହିମତୟା ପୁରୁଷୋତ୍ତମ ନାମଧେୟସ୍ୟ ଚକ୍ରବର୍ତ୍ତୀଚୂଡ଼ାମଣେରନଙ୍ଗଭୀବଦେବ ନୃପତେରୁଦ୍ଦଣ୍ଡଦୋର୍ଦ୍ଦଣ୍ଡ ଚଣ୍ଡିମମହିମ୍ନା ଅକୁତୋଭୟା ଜଗଦାଶ୍ଚର୍ଯ୍ୟନିଦାନଭୂତା ଏତା ଭୂମୟଃ × × ×" ( ଗ. ବ. ଚ. ଚମ୍ପୂ, ୭ମ ପରିଚ୍ଛେଦ ) । ( ଉତ୍ତୁଙ୍ଗ ଗଙ୍ଗବଂଶୋଦ୍ଭବ ଅଲୌକିକ ପ୍ରତିଭାସମ୍ପନ୍ନ ଚକ୍ରବର୍ତ୍ତୀ ଚୂଡ଼ାମଣି ଶ୍ରୀପୁରୁଷୋତ୍ତମ ଅନଙ୍ଗଭୀମଦେବଙ୍କର ପ୍ରଖର ପ୍ରତାପରେ ଏହି ରାଜ୍ୟ ନିର୍ଭୟରେ ପରିଚାଳିତ ହୋଇ ସମଗ୍ର ଜଗତକୁ ଚମତ୍କୃତ କରୁଥିଲା । )

× × ×

"ଦୃଷ୍ଟ୍ୱା ଜାନପଦାନ୍ ତପୋଽର୍ଜନପରାନ୍ ଘନେ ଦୟାଶାଳିନୋ
ଦାନେ ମାନ ପୁରଃସରାନ୍ ଜନପଦଃ ସତ୍ୟେଽପି ନିତ୍ୟାଦରମ୍ ।
ମନ୍ୟେ ଶ୍ରୀପୁରୁଷୋତ୍ତମକ୍ଷିତିଭୃତା ଲୋକାନ୍ତରାତ୍ ସାମ୍ପ୍ରତମ୍
ଧର୍ମଦ୍ରୁବିଷୟେ ସ୍ୱକେ ଭୁବିବଳାଦୁତ୍ଥାପ୍ୟ ସଂସ୍ଥାପିତଃ ।"

( ୮ମ ପରିଚ୍ଛେଦଃ, ଶ୍ଳୋକ-୭ )

( ତାଙ୍କର ରାଜତ୍ୱରେ ରାଜ୍ୟର ପ୍ରଜାବର୍ଗଙ୍କର ଅଶେଷ ତପଶ୍ଚର୍ଯ୍ୟା, ସତ୍ୟପରାୟଣତା, ଦାନ ଓ ଦୟାଶୀଳତାକୁ ଲକ୍ଷ୍ୟ କଲେ ମନେହୁଏ ସତେ ଯେପରି ରାଜା ପୁରୁଷୋତ୍ତମ

ଧର୍ମରୂପୀ ବୃକ୍ଷକୁ ଲୋକାନ୍ତରରୁ ବଳପୂର୍ବକ ଉତ୍ପାଟନ କରି ସ୍ୱରାଜ୍ୟାନ୍ତର୍ଗତ ଭୂମଣ୍ଡଳରେ ସଂରୋପିତ କରିଥିଲେ ।)

× × ×

ସେହିପରି, "ଈଦୃଶୀ ପ୍ରଜାପାଳନଶ୍ରୁତିଃ ଅନଙ୍ଗଭୀମଦେବସ୍ୟ ଈଦୃଶୀଂ ଜନାନାଂ ନିରୁପଦ୍ରବତା, ଈଦୃକ୍ ସ୍ୱଧର୍ମପରତ୍ୱଂ ବୃତ୍ତିବର୍ଣ୍ଣ୍ୟସ୍ୟ × × ×" (୮ମ ପରିଚ୍ଛେଦ) ଇତ୍ୟାଦି ବର୍ଣ୍ଣନା କବି ଅନଙ୍ଗଭୀମଙ୍କର ମହନୀୟ ଚରିତାବଳୀର ପରିଚାୟକ ।

ସେ ଯେ ଜଣେ ପ୍ରତାପଶାଳୀ ଚକ୍ରବର୍ତ୍ତୀ ସମ୍ରାଟ ଥିଲେ ତାହା ସୋମଯାଜୀଙ୍କର ନିମ୍ନଲିଖିତ ଉକ୍ତିରୁ ମଧ୍ୟ ଜଣାଯାଏ—

"ସ ଏଷ କ୍ଷିତିଭୃତ୍-କୋଟି-ନିଘୃଷ୍ଟ-ପଦାମ୍ବୁଜଃ ।
ପ୍ରଶାସ୍ତି ଧରଣୀଂ ଦୋର୍ଭ୍ୟାଂ ବୀରଃ ଶ୍ରୀପୁରୁଷୋତ୍ତମଃ ।"
(୯ମ ପରିଚ୍ଛେଦ, ଶ୍ଲୋକ-୧୭)

ଅର୍ଥାତ୍ ରାଜା ଶ୍ରୀପୁରୁଷୋତ୍ତମ ଅଗଣିତ ନରପତିଙ୍କ ଦ୍ୱାରା ପୂଜିତ ତଥା ସମ୍ମାନିତ ହୋଇ ସୁଚାରୁରୂପେ ରାଜ୍ୟ ଶାସନ କରୁଛନ୍ତି ।

ଅନଙ୍ଗଭୀମଙ୍କର ବୀରତ୍ୱ ତଥା ଦିଗ୍‌ବିଜୟର ଯଥେଷ୍ଟ ପରିଚୟ ଉକ୍ତ ଚମ୍ପୂଗ୍ରନ୍ଥରୁ ମିଳେ । ଏଥିରୁ ଜଣାଯାଏ ଗଜପତି ପୁରୁଷୋତ୍ତମ ଅନଙ୍ଗଭୀମ କେରଳ, ନନ୍ଦନଗିରି, ମଗଧ, କଳିଙ୍ଗ, ଭଞ୍ଜଭୂପ, ବିରୁଳ, ପାଲୁର, ଶାଲୁର ପ୍ରଭୃତି ରାଜ୍ୟାଧିପତିଙ୍କୁ ଯୁଦ୍ଧରେ ପରାସ୍ତ କରିଥିଲେ । କିନ୍ତୁ ସମ୍ଭବତଃ କେରଳ, ମଗଧ ପ୍ରଭୃତି ରାଜ୍ୟ ଜୟ କୃତ୍ରିମ କବିଙ୍କର କଳ୍ପନାପ୍ରସୂତ । ତେବେ ନିକଟବର୍ତ୍ତୀ ଜୟପୁର ଅନ୍ତର୍ଗତ ନନ୍ଦପୁର, ଭଞ୍ଜପୁର ବା ଘୁମୁସର, ଗଞ୍ଜାମର ପାଲୁର ବା ଦନ୍ତପୁର ଓ ବିରୁଳ ପ୍ରଭୃତି ତଥା ବିଶାଖାପାଟଣା ଅନ୍ତର୍ଗତ ଶାଲୁର ରାଜ୍ୟମାନ ସେ ଜୟ କରିଥିବା ସମୀଚୀନ ମନେହୁଏ ବୋଲି ଐତିହାସିକ ଶ୍ରୀଯୁକ୍ତ କେଦାରନାଥ ମହାପାତ୍ର ଓ ଲିପିତତ୍ତ୍ୱବିତ୍ ଶ୍ରୀଯୁକ୍ତ ସତ୍ୟନାରାୟଣ ରାଜଗୁରୁ ପ୍ରମୁଖ ଉଲ୍ଲେଖ କରିଛନ୍ତି ।

ରାଜା ଅନଙ୍ଗଭୀମ ଅଶ୍ୱ ଓ ହସ୍ତୀ ପୃଷ୍ଠରେ ଆସୀନ ବହୁ ପ୍ରସିଦ୍ଧ ରାଜକର୍ମଚାରୀ ପରିବେଷ୍ଟିତ ହୋଇ ଆଡ଼ମ୍ବରପୂର୍ଣ୍ଣ ଶୋଭାଯାତ୍ରା ଓ ମୃଗୟା କରୁଥିବାର ବର୍ଣ୍ଣନା, ଅନଙ୍ଗଭୀମ ଦେବଙ୍କ ରାଜଧାନୀ ବିଜୟନଗରର ଭୌଗୋଳିକ ଅବସ୍ଥିତି ତଥା ବିଭିନ୍ନ ପ୍ରାକୃତିକ ଦୃଶ୍ୟାବଳୀର ମନୋହର ଆଲେଖ୍ୟ ଉକ୍ତ ଚମ୍ପୂରେ ପ୍ରଦତ୍ତ ହୋଇଅଛି ।

ପରିଶେଷରେ ପଣ୍ଡିତ ସୋମଯାଜୀ ଗଜପତି କବିଙ୍କର ଶୌର୍ଯ୍ୟ, ବୀର୍ଯ୍ୟ, ସୌନ୍ଦର୍ଯ୍ୟ ତଥା ମହନୀୟ ଗୁଣାବଳୀର ଦିଗ୍‌ଦର୍ଶନ ଏକମାତ୍ର ଶ୍ଲୋକରେ ଦେଇଯାଇଛନ୍ତି—

"କୋ ଦାତ୍ୱ ପ୍ରବରଃ କ ଇନ୍ଦୁ ରୁଚିରଃ କଃ କ୍ଷୁଣ୍ଣଶତ୍ରୁବ୍ରଜଃ
କୋ ବା ଧୀରତରଃ କ ଏବ ଚତୁରଃ କଃ ସତ୍ୟ ବାଗ୍‌ଡମ୍ବରଃ ।
ଇତ୍ୟେବଂ ପରିଷଦ୍‌ଗତେଷୁ ବହୁଧା ପ୍ରଶ୍ନେଷୁ ସିଦ୍ଧାନ୍ତିନାଂ
ସର୍ବେଷାମପ୍ୟୁତ୍ତରଂ ବିଜୟତେ ସୋଽନଙ୍ଗଭୀମଃ ପ୍ରଭୁଃ ।"

( ନବମ ପରିଚ୍ଛେଦ, ଶ୍ଳୋକ-୪୦ )

ଅର୍ଥାତ୍ ରାଜପରିଷଦ ମଧ୍ୟରେ ଯେତେବେଳେ ପଣ୍ଡିତମାନେ ବିଭିନ୍ନ ପ୍ରଶ୍ନ କରୁଥିଲେ—ଜଗତରେ ସବୁଠାରୁ ଅଧିକ ଦାନୀ କିଏ, ଚନ୍ଦ୍ରଙ୍କ ତୁଲ୍ୟ ସୁନ୍ଦର କିଏ, କିଏ ଶତ୍ରୁଦଳଗଣଙ୍କୁ ଧୂଳିସାତ୍ କରିଥାଏ ଏବଂ ସବୁଠାରୁ ଧୀର, ଚତୁର, ସତ୍ୟବାଦୀ ତଥା ବାଗ୍ମୀ କିଏ—ଏ ସମସ୍ତ ପ୍ରଶ୍ନର ଏକମାତ୍ର ଉତ୍ତର ଥିଲା, ସେ ହେଉଛନ୍ତି ରାଜା ଅନଙ୍ଗଭୀମ ଦେବ ।

ଏହି ଚମ୍ପୂକାବ୍ୟ ବ୍ୟତୀତ ଅନଙ୍ଗଭୀମଙ୍କ ରାଜତ୍ୱକାଳରେ ପ୍ରଚଳିତ କେତେକ ତାମ୍ରାନୁଶାସନ, ଦାନପତ୍ରାଦି ତଥା ଗଞ୍ଜାମ ଜିଲ୍ଲା ବ୍ୟାଖ୍ୟା ପୁସ୍ତିକା ( Ganjam District Manual ) ପ୍ରଭୃତି ତତ୍କାଳୀନ ବହୁ ବ୍ରିଟିଶ ରେକର୍ଡ଼ରୁ ମଧ୍ୟ କବିଙ୍କ ସମ୍ବନ୍ଧରେ ବହୁ ସୂଚନା ମିଳେ । "ଓଡ଼ିଶା ଗଡ଼ଜାତ ଇତିହାସ"ରୁ ଜଣାଯାଏ ପଦ୍ମନାଭ ଦେବ ବିଜୟନଗର ନାମକ ପ୍ରକାଣ୍ଡ ଦୁର୍ଗ ନିର୍ମାଣ କରିଥିଲେ ଏବଂ ତାହା ହିଁ ତାଙ୍କର ରାଜଧାନୀ ଥିଲା । ଏହି ମହାରାଜ ପଦ୍ମନାଭଙ୍କର ପୀତାମ୍ବର ଓ ବାସୁଦେବ ନାମକ ଦୁଇଗୋଟି ପୁତ୍ର ଜାତ ହୋଇଥିଲେ । ଏ ରାଜା ୨୨ ବର୍ଷ ରାଜତ୍ୱ କରି ଅମରଧାମ ପ୍ରାପ୍ତ ହେଲେ । ତତ୍ପରେ ତାହାଙ୍କର ଜ୍ୟେଷ୍ଠପୁତ୍ର ପୀତାମ୍ବର ଦେବ ରାଜା ହେଲେ । ମହାରାଜ ପଦ୍ମନାଭ ଦେବଙ୍କ ପରେ ପୀତାମ୍ବର ଦେବ ୧୫ ବର୍ଷ ଓ ତାହାଙ୍କ ପୁତ୍ର ରାମଚନ୍ଦ୍ର ଦେବ ୩ ମାସ ମାତ୍ର ରାଜତ୍ୱ କରି ଭବଲୀଳା ସମ୍ବରଣ କଲେ । ରାମଚନ୍ଦ୍ର ଅପୁତ୍ରିକ ଅବସ୍ଥାରେ ମୃତ ହେବାରୁ ତାହାଙ୍କର ପିତୃବ୍ୟ 'ବାସୁଦେବ' ଥାଟରାଜଙ୍କ ପୁତ୍ର ପୁରୁଷୋତ୍ତମ ଦେବ ରାଜସିଂହାସନରେ ଆସୀନ ହୋଇଥିଲେ ।[୧]

Ganjam District Manual ରୁ ପୁରୁଷୋତ୍ତମ ଅନଙ୍ଗଭୀମଙ୍କର ପ୍ରବଳ ପ୍ରତାପ ଓ ପରାକ୍ରମର ପରିଚୟ ମିଳେ ।[୨] ତାଙ୍କ ରାଜ୍ୟ ଉପରେ ପ୍ରଭାବ ବିସ୍ତାର କରିବାକୁ ଚେଷ୍ଟା କରୁଥିବା ତଦାନନ୍ତନ ବ୍ରିଟିଶ ସରକାରଙ୍କର ସହ ସେ ସାତବର୍ଷକାଳ ଯୁଦ୍ଧ କରିଥିବାର ଏଥିରୁ ଜଣାଯାଏ । ଏହି ରାଜା ସମ୍ଭବତଃ ପାରଳାଖେମୁଣ୍ଡିର

---

୧ । ଓଡ଼ିଆ ଗଡ଼ଜାତ ଇତିହାସ ( ପ୍ରଥମ ଖଣ୍ଡ ), ରଘୁନାଥ ଗୁରୁକବି, ପୃ. ୩୫

୨ । "The most troublesome Zemindar was, however, Bheema Deo, the Rajah of Vijayanagar and Pratapagiri, who had taken possession of the Haveli fort at Kurla". ( Ganjam District Manual, Page 92-93 ).

ଗଜପତି ଜଗନ୍ନାଥ ନାରାୟଣ ଦେବଙ୍କ ମୃତ୍ୟୁ ପରେ ତାଙ୍କ ପୁତ୍ର ନାରାୟଣ ଦେବଙ୍କୁ ବହୁତ ସହାୟତା କରିଥିଲେ ଏବଂ ସେଇଥିପାଇଁ ସ୍ୱୀ ତାଙ୍କୁ ଇଂରେଜମାନଙ୍କ ଆକ୍ରମଣର ସମ୍ମୁଖୀନ ହେବାକୁ ପଡ଼ିଥିଲା ।[୧] ବହୁବର୍ଷ ଯୁଦ୍ଧ ପରେ ପରିଶେଷରେ ୧୭୭୨ ଖ୍ରୀ: ରେ ସେ ନିତାନ୍ତ ବୃଦ୍ଧ ହୋଇଯାଇଥିବା ହେତୁ ଇଂରେଜମାନଙ୍କ ଦ୍ୱାରା ପରାଜିତ ହୋଇଥିଲେ ଏବଂ ବଡ଼ଖେମୁଣ୍ଡି ଦୁର୍ଗ ଇଂରେଜମାନଙ୍କ ଦ୍ୱାରା ଅଧିକୃତ ହେଲା ।[୨] ୧୭୭୬ ଖ୍ରୀ:ଅ:ରେ ସେ ପ୍ରାଣତ୍ୟାଗ କରିଥିବା ଜଣାଯାଏ । ଏହି ରାଜା ଓ ତାଙ୍କ ରାଜଧାନୀ ବିଜୟନଗର ସମ୍ବନ୍ଧରେ ଇଂରେଜ କର୍ମଚାରୀ Mr. Maltby ମଧ୍ୟ Ganjam District Manual ରେ ଉଲ୍ଲେଖ କରିଛନ୍ତି ଯହିଁରୁ କିୟଦଂଶ ନିମ୍ନରେ ଉଦ୍ଧାର କରାଗଲା—

"In 1768 when Mr. Cotsford took possession of the Ichhapur province, he found the united estate in the hands of Bhīma Deo, the most troublesome zamindar in the district. At his death in 1776 A. D. one of his son Mani Deo, kept Vijayanagar or Pedda-Kimedi and the other Jagannath Deo succeeded to Pratapagiri or Chinna Kimedi."

× × ×

The Rajas *gaḍa* or fort was formerly at Vijayanagari. The present residence of the zamindar is at Digupudi."[୩]

( Ganjam District Manual, P. 20-21 )

---

୧ । "In February 1772, news was received from the Chief at Vizagapatam that Gajapati Deo, the Zamindar of Paralakhimundi had fled from his estate in consequence of the enemity of and intrigues of Sitarama Raj. Mr. Cotsford discovered that he had retired to Ramgiri in the maliah country, where he had placed himself under the protection of his uncle Bhīma Deva ( Purusottama Anaṅga Bhīma Kesari ), the Raja at Vizianagaram ( Bada Khimundi ).

( Ganjam District Manual, Page—104. )

୨ । Ibid. P. 105.

୩ । ଓଡ଼ିଆରେ Pedda-Kimedi, Chinnā-Kimedi and Digupudi ଯଥାକ୍ରମେ ବଡ଼ଖେମୁଣ୍ଡି, ସାନଖେମୁଣ୍ଡି ଏବଂ ଦିଗପହଣ୍ଡି ନାମରେ ଖ୍ୟାତ ।

( O. H. R. J., Vol. III, No. 3, Page—155 )

ସେ କେବଳ ଖ୍ରୀମଦେବ ନାମରେ ମଧ୍ୟ ପରିଚିତ ଥିବାର ଏକ ଦାନପତ୍ରରୁ ତଥା Ganjam District Manual ରୁ ଜଣାଯାଏ । ସୋମଯାଜୀ ପ୍ରଣୀତ ଚମ୍ପୂ-କାବ୍ୟର ଏକ ସ୍ଥାନରେ ମଧ୍ୟ ରାଜା ଖ୍ରୀମଦେବଙ୍କ ଦ୍ୱାରା ସ୍ଥାପିତ ଶାସନର ନାମ ଖ୍ରୀମପୁର ଥିବାର ଉଲ୍ଲେଖ ମିଳେ ।[୧]

ଅନଙ୍ଗଖ୍ରୀମ ଦେବ ଖୋର୍ଦ୍ଧାରାଜା ଗଜପତି ବୀରକେଶରୀ ଦେବଙ୍କର ( ଖ୍ରୀ: ୧୭୩୭— ଖ୍ରୀ: ୧୭୯୩ ) ସମସାମୟିକ ଥିବାର ବହୁ ପ୍ରମାଣ ମିଳେ । କିନ୍ତୁ ତାଙ୍କର ରାଜସିଂହାସନ ଅଧିକାର କରିବାର ନିର୍ଦ୍ଦିଷ୍ଟ ସମୟ ଜଣାଯାଇ ନାହିଁ । ଐତିହାସିକ ଶ୍ରୀ କେଦାରନାଥ ମହାପାତ୍ର ଏହି ଗଜପତିଙ୍କ ପ୍ରଦତ୍ତ ଏକ ତାମ୍ରାନୁଶାସନର ଅନୁଧ୍ୟାନରୁ ଆନୁମାନିକ ୧୭୬୮ ଖ୍ରୀଷ୍ଟାବ୍ଦ ତାଙ୍କର ଶାସନର ପ୍ରାରମ୍ଭକାଳ ବୋଲି ମତବ୍ୟକ୍ତ କରିଛନ୍ତି ।[୨]

ଏହି ଗଜପତିଙ୍କର ଶାସନକାଳ ମଧ୍ୟରେ 'ଗଙ୍ଗବଂଶାନୁଚରିତମ୍' ଚମ୍ପୂ ପ୍ରଣେତା ପୂର୍ବୋକ୍ତ ପଣ୍ଡିତ ବାସୁଦେବ ରଥ ସୋମଯାଜୀଙ୍କ ବ୍ୟତୀତ ଓଡ଼ିଶାର ବହୁ ବରିଷ୍ଠ ଖ୍ୟାତନାମା ପଣ୍ଡିତ ରାଜସଭା ଅଳଙ୍କୃତ କରି ତାଙ୍କର ବଦାନ୍ୟତା ଓ ଉତ୍ସାହ ପ୍ରଦାନଦ୍ୱାରା ତଦାନୀନ୍ତନ ଓଡ଼ିଶାର ସାହିତ୍ୟ ଭଣ୍ଡାରକୁ ବହୁ ଅମର କୃତିରାଜିରେ ପରିପୂର୍ଣ୍ଣ କରିଛନ୍ତି ।

ଗଞ୍ଜାମ ଜିଲ୍ଲାର ଏକ ପ୍ରସିଦ୍ଧ ପଣ୍ଡିତ ପରିବାରରେ ଜନ୍ମଗ୍ରହଣ କରିଥିବା କବିରତ୍ନ ହରିସେବକ ସାମନ୍ତରାୟ ଗଜପତି ପୁରୁଷୋତ୍ତମ ଦେବଙ୍କଠାରୁ 'କବିରତ୍ନ' ଉପାଧି ଲାଭ କରିଥିବା ଜଣାଯାଏ । ତାଙ୍କର ବିଦ୍ୟାଗୁରୁ, ଜ୍ୟେଷ୍ଠତାତ ଦାମୋଦର ପଣ୍ଡିତ ମହାରାଜାଧିରାଜ ପୁରୁଷୋତ୍ତମଙ୍କ ନିର୍ଦ୍ଦେଶରେ "ଭକ୍ତିରସାମୃତ ସିନ୍ଧୁ" ନାମକ ପ୍ରସିଦ୍ଧ ସଂସ୍କୃତ ବୈଷ୍ଣବ ଗ୍ରନ୍ଥର ଟିପ୍ପଣୀ ରଚନା କରିଥିଲେ[୩] ଏବଂ ସେଥିରେ ଅନୁପ୍ରାଣିତ ହୋଇ ହରିସେବକ କବିରତ୍ନ କୃଷ୍ଣଦାସ ଗୋସ୍ୱାମୀଙ୍କ କୃତ ପ୍ରସିଦ୍ଧ "ଗୋବିନ୍ଦ ଲୀଳାମୃତ" ସଂସ୍କୃତ କାବ୍ୟର 'ବୈଷ୍ଣବାହ୍ଲାଦନୀ" ନାମକ ସଂସ୍କୃତ ଟୀକା କରି ଅନଙ୍ଗଖ୍ରୀମ ଦେବଙ୍କ ରାଜତ୍ୱର ପ୍ରାକ୍‌କାଳରେ ରଚନା କରିଥିଲେ ।

କବି ବନବାଳ ଚକ୍ରପାଣି ପଟ୍ଟନାୟକଙ୍କ ପିତା ବ୍ରଜସୁନ୍ଦର ପଟ୍ଟନାୟକ ମଧ୍ୟ ଏହି ଗଜପତିଙ୍କ ରାଜତ୍ୱ କାଳରେ ସଂସ୍କୃତ ଓ ଓଡ଼ିଆରେ ବହୁ କାବ୍ୟ କବିତା ରଚନାଦି

---

୧ । "ଇଦାନୀମିହ ଖ୍ରୀମପୁର ନାମଧେୟ ଶାଳିନୀ ଶାସନୋତ୍ତମେନ ଶ୍ରୀ ପୁରୁଷୋତ୍ତମ ନରନାଥ ପ୍ରତାପତପନୋଦୟାଦଦୃଷ୍ଟତ ମୋଲବାଃ ଶ୍ରୋତ୍ରିୟପୁଙ୍ଗବାଃ ପ୍ରତିବସନ୍ତି" ( ୮ମ ପରିଚ୍ଛେଦ ) ।

୨ । O. H. R. J., Vol. III, No. 3, P. 154

୩ । "ଯଃ ଶ୍ରୀ ପୁରୁଷୋତ୍ତମାଭିଧମହାରାଜାଧିରାଜାଜ୍ଞୟା
ଶ୍ରୀମଦ୍ ଭକ୍ତିରସାମୃତାମ୍ବୁଧିଗତ ଶ୍ଳୋକାବଳୀ ଟିପ୍ପଣୀଂ
କୃତ୍ୱାଙ୍କୁରିତମୂନଂ ପ୍ରକଟୟନ୍ନାନନ୍ଦୟନ୍ ବୈଷ୍ଣବାନ × × ×"
( 'ଗୋବିନ୍ଦଲୀଳାମୃତ' ପୋଥିର ବୈଷ୍ଣବାହ୍ଲାଦନୀ ଟୀକା, ଓଡ଼ିଶା ରାଜ୍ୟ ସଂଗ୍ରହାଳୟ )

ରଚନା କରି ଓଡ଼ିଶାର ସାହିତ୍ୟକୁ ସମୃଦ୍ଧ କରିଯାଇଛନ୍ତି । ସଂସ୍କୃତ ଭାଷାରେ ସେ 'ସୁଲୋଚନା ମାଧବ' ବା 'ମାଧବୀୟ ଚରିତମ୍' ନାମକ ଷୋଡ଼ଶ ସର୍ଗବିଶିଷ୍ଟ ଏକ ବିରାଟ ମହାକାବ୍ୟ ରଚନା କରି ନିଜକୁ ଅମର କରିପାରିଛନ୍ତି । ଏହି କାବ୍ୟରେ କବି ବ୍ରଜସୁନ୍ଦର ନିଜର ତଥା ସ୍ୱ ପୃଷ୍ଠପୋଷକଙ୍କର ପରିଚୟ ଦେବାକୁ ଯାଇ ଲେଖିଛନ୍ତି—

"ଯଂ ଚକ୍ରେ ସ୍ୱ ସଭାବିଭୂଷଣମଣି ରାଜନ୍ୟ ଚୂଡ଼ାମଣି
ବିଦ୍ୟାସିନ୍ଧୁରନଙ୍ଗଭୀମନୃପତିଃ ଶ୍ରୀ ଗାଙ୍ଗବଂଶୋଦ୍‌ଭବଃ ।
ତସ୍ୟ ଶ୍ରୀ ବ୍ରଜସୁନ୍ଦରସ୍ୟ କୃତିନୋ ବିପ୍ରଶିକ୍ଷାକାଙ୍‌କ୍ଷିଣଃ ।
କାବ୍ୟେ ପାବନ-ମାଧବୀୟ-ଚରିତେ ସର୍ଗୋଽସ୍ୱମାଦ୍ୟର୍ଗତଃ ।"

( ପ୍ରଥମ ସର୍ଗ, ଶେଷ ଶ୍ଳୋକ )

ଦ୍ୱିତୀୟ ସର୍ଗର ଶେଷ ଶ୍ଳୋକରେ ଅନଙ୍ଗଭୀମଙ୍କ ସମ୍ବନ୍ଧରେ ଆହୁରି ପରିଚୟ ଦେଇ କହିଛନ୍ତି—

"ବିଦ୍ୟା ସିନ୍ଧୁରନଙ୍ଗଭୀମ ନୃପତିଃ ଶ୍ରୀ ବାସୁଦେବାତ୍ମଜଃ"

କବିଙ୍କର ଉପର୍ଯୁକ୍ତ "ବିଦ୍ୟାସିନ୍ଧୁରନଙ୍ଗଭୀମ" ଉକ୍ତିରୁ ଆଲୋଚ୍ୟ କବି ଅନଙ୍ଗଭୀମ ଦେବଙ୍କର ବିଦ୍ୱତା ତଥା ବିଦ୍ୱତ୍‌ଗ୍ରାହିତାର ଯଥେଷ୍ଟ ପ୍ରମାଣ ମିଳେ । କବି ବ୍ରଜସୁନ୍ଦର ମଧ୍ୟ ଓଡ଼ିଆରେ 'ଅ' ଆଦ୍ୟାନୁପ୍ରାସରେ ଛପନ ପଦିଆ ନାମକ ଏକ ରସାଳ ସାହିତ୍ୟ ରଚନା କରି ସେଥିରେ ସେ ଅନଙ୍ଗଭୀମଦେବଙ୍କ କୀର୍ତ୍ତି ଗାନ କରିଛନ୍ତି—

"ଅନଙ୍ଗଭୀମ ଦେବ ନରପତି
ଅବନୀ ମଣ୍ଡଳେ ବିଦିତ କୀର୍ତ୍ତି ।
ଅଗ୍ରଣୀ କବି ତାଙ୍କ ଶଶଧର
ଆଖ୍ୟା ଅଟଇ ବରଜ ସୁନ୍ଦର
'ଅ' ବର୍ଣ୍ଣରେ ଗୀତ
ଅବିଘ୍ନ କରି କଲେ ସମାପତ ।"

ଏତଦ୍‌ବ୍ୟତୀତ ଅନଙ୍ଗଭୀମଙ୍କ ସଭାକବି କବିରାଜ କେଶବ ରଥ ତାଙ୍କ ରାଜତ୍ୱ କାଳରେ 'ଅନଙ୍ଗରଙ୍ଗିଣୀ' ନାମକ ଏକ କାଳ୍ପନିକ କାବ୍ୟ ରଚନା କରିଥିଲେ[1] ଏବଂ ତାଙ୍କର ଅନ୍ୟ କୌଣସି କୃତିର ସନ୍ଧାନ ଅଦ୍ୟାବଧି ମିଳି ନ ଥିଲେ ମଧ୍ୟ ସେ ଆହୁରି ବହୁ ଗ୍ରନ୍ଥର ଯେ ନିଶ୍ଚୟ ପ୍ରଣୟିତା ଥିଲେ ତାହା ତାଙ୍କର ଏହି 'କବିରାଜ' ପଦବୀରୁ ସୂଚିତ ହୁଏ ।

---

୧ । "ସମସ୍ତ ଅବନୀ ମଣ୍ଡଳ ମଣ୍ଡନ ଖିମିଣ୍ଡି ନାମେ ଅଛୁ ଦେଶ
ଅନଙ୍ଗଭୀମ କେଶରୀ ପୁରୁଷୋତ୍ତମ ଦେବ ହରମ ଯହିଁ ଈଶ
ସୁଜନେ, ସେ ରାଜ୍ୟେ ଏହାର ସଦନ ।
ସବିଜ ଆଦେଶ ଗୋଷ୍ଠ ଅବତଂସ କହେ ଏ ଜ୍ଞାନ କବିରାଜନ ।"
( ଅନଙ୍ଗରଙ୍ଗିଣୀ, ସଂଗ୍ରହାଳୟ ପୋଥି ନଂ Or. Ms. 68, ୪ର୍ଥ ଛାନ୍ଦ, ଶେଷ ଭଣିତା )

ଏହିପରି ଭାବରେ "କୃଷ୍ଣ କେଳି ତରଙ୍ଗିଣୀ" ରଚୟିତା ଗଜପତି ପୁରୁଷୋତ୍ତମ ଅନଙ୍ଗଭୀମ ଦେବ ସ୍ୱୟଂ ଜଣେ ବିଦ୍ୱାନ୍ ଓ କବି ଥିବା ସଙ୍ଗେ ସଙ୍ଗେ ବହୁ ସାହିତ୍ୟିକ ତଥା ପଣ୍ଡିତମାନଙ୍କର ମଧ୍ୟ ପୃଷ୍ଠପୋଷକ ଥିଲେ । ସେ ଏକାଧାରରେ ଜଣେ ବୀର, ପରାକ୍ରମୀ, ଯୋଦ୍ଧା, ସାହିତ୍ୟପ୍ରେମୀ ଓ ସତ୍ୟ, ନ୍ୟାୟପରାୟଣ ସୁଶାସକ ଥିଲେ । ଏହି କାବ୍ୟରୁ ସେ ଜଣେ ପରମବୈଷ୍ଣବ ଥିବା ମଧ୍ୟ ପ୍ରମାଣିତ ହୁଏ । ସେଥିପାଇଁ ସେ ତାଙ୍କ ରାଜସଭାର ପ୍ରସିଦ୍ଧ ଦାମୋଦର ପଣ୍ଡିତଙ୍କୁ "ଭକ୍ତି ରସାମୃତ ସିନ୍ଧୁ" ନାମକ ବୈଷ୍ଣବ ଗ୍ରନ୍ଥର ଟିପ୍ପଣୀ ପ୍ରସ୍ତୁତ କରିବାକୁ ନିର୍ଦ୍ଦେଶ ଦେଇଥିଲେ ।

ତଦାନୀନ୍ତନ ରାଧାକୃଷ୍ଣ ଭକ୍ତିଧାରାର ପରମ ଉତ୍ସ ଶ୍ରୀ ଶ୍ରୀ ଚୈତନ୍ୟଙ୍କର ବଳିଷ୍ଠ ପ୍ରଭାବ ଯେ ସେତେବେଳେ ସମଗ୍ର ଓଡ଼ିଶାରେ ଛିଟ୍‌କୁରିତ ହୋଇ ଘନଅରଣ୍ୟ ପର୍ବତାବୃତ ଦୁର୍ଗମ ଖିମୁଣ୍ଡି ରାଜ୍ୟକୁ ମଧ୍ୟ ପରିବ୍ୟାପ୍ତ ହୋଇଥିଲା, ତାହା ଏଥିରୁ ସୁସ୍ପଷ୍ଟ ।

**ରାଧାକୃଷ୍ଣ ଲୀଳାର ଉଦ୍ଭବ ଓ କ୍ରମବିକାଶ—**

ସମୁଦ୍ରର ଗଭୀରତା ତଥା ସମୁଦ୍ର ବେଳାଭୂମିସ୍ଥ ବାଲୁକାରାଶିର ସଂଖ୍ୟା ନିର୍ଣ୍ଣୟ କରିବା ଯେପରି କଳ୍ପନାତୀତ, ଅନାଦି, ଅନନ୍ତ ପରମ ପୁରୁଷ ଶ୍ରୀକୃଷ୍ଣଙ୍କର ମହିମାମୟ ଚରିତ ସମ୍ପୂର୍ଣ୍ଣ ଭାବରେ ଆଲୋଚନା କରି ଅବଗତ ହେବା ସେହିପରି ଦୁରୂହ ଓ ସାଧ୍ୟାତୀତ । ଶ୍ରୀକୃଷ୍ଣ ନାମର ମହିମା ଓ ମାଧୁରୀ ଅଲୌକିକ ଓ ବର୍ଣ୍ଣନାତୀତ । ଭାରତୀୟ ଧର୍ମପ୍ରାଣ ହିନ୍ଦୁ କେଉଁ ଆବହମାନ କାଳରୁ ଏହି ନାମର ମାଧୁରୀ ଆସ୍ୱାଦନ କରି ତାହାର ଶ୍ରବଣ, କୀର୍ତ୍ତନ ଓ ପୂଜା କରି ଆସିଅଛୁ । ଯେତେ ବହୁଳ ଭାବରେ ଏବଂ ବିବିଧ ରୂପରେ ଭାରତୀୟ କୃଷ୍ଣଙ୍କର ଉପାସନା କରି ଆସିଛୁ ତାହା ଅନ୍ୟ କୌଣସି ଦେବତାଙ୍କ ପ୍ରତି ଯେ ହୋଇ ନାହିଁ ଏହା ନିଃସନ୍ଦେହ । ଶ୍ରୀରାଧାଙ୍କ ଆବିର୍ଭାବ ପରେ କୃଷ୍ଣୋପାସନା ଏକ ସମ୍ପୂର୍ଣ୍ଣ ଅନ୍ତରଙ୍ଗ ସାଧନାର ଅନ୍ତର୍ଭୁକ୍ତ ହୋଇଯାଇଅଛି । ଭାରତୀୟ ତଥା ଉତ୍କଳୀୟ ବହୁ ସୁକବି ଓ ପଣ୍ଡିତଙ୍କର ଲେଖନୀ ଏହି କୃଷ୍ଣଙ୍କର କଦମ୍ବମାଳିନ, ପୀତବସନଧାରୀ, ଅତସିକୁସୁମତୁଲ୍ୟ ଶ୍ୟାମସୁନ୍ଦର ନାମ ଓ ଚରିତ ବର୍ଣ୍ଣନାରେ ଚରିତାର୍ଥ ହୋଇଅଛି ।

'କୃଷ୍ଣ କେଳି ତରଙ୍ଗିଣୀ'ର ରଚୟିତା ଗଜପତି ଅନଙ୍ଗଭୀମ ଦେବ ସେହିପରି ଶ୍ରୀକୃଷ୍ଣୋପାସନାରେ ଆଧାରିତ ସମଗ୍ର ଭାରତରେ ପରିବ୍ୟାପ୍ତ ହୋଇଥିବା ଭାଗବତ ଧର୍ମ ତଥା କୃଷ୍ଣଭକ୍ତି ରସରେ ଆପ୍ଳୁତ ହୋଇ ଏହି କ୍ଷୁଦ୍ର କାବ୍ୟଟିରେ ଶ୍ରୀକୃଷ୍ଣଙ୍କର ଅନନ୍ତ ଲୀଳା ମଧ୍ୟରୁ ବୃନ୍ଦାବନରେ ସଂଘଟିତ କେବଳ ମଧ୍ୟାହ୍ନ ଲୀଳା ବର୍ଣ୍ଣନା କରିଛନ୍ତି । ତେଣୁ ତାଙ୍କର ଏହି କାବ୍ୟ ଉପରେ ଦୃଷ୍ଟିପାତ କରିବା ପୂର୍ବରୁ ଭଗବାନ ଶ୍ରୀକୃଷ୍ଣଙ୍କର ଏହି ଲୀଳାତତ୍ତ୍ୱ ଉପରେ କିଞ୍ଚିଦାଲୋଚନା କରିବା ପ୍ରାସଙ୍ଗିକ ମନେହୁଏ ।

ପରଂବ୍ରହ୍ମ ହିସାବରେ ଶ୍ରୀକୃଷ୍ଣଙ୍କର ଆତ୍ମତତ୍ତ୍ୱ ଯେପରି ନିଗୂଢ଼, ଅବତାରୀ ରୂପରେ ତାଙ୍କର ଲୀଳାତତ୍ତ୍ୱ ଆହୁରି ଗୂଢ଼ତର । କୁହାଯାଇଅଛି ଯେ ଭଗବାନଙ୍କର ରୂପ ଓ ଶକ୍ତିତୁଲ୍ୟ ଲୀଳା ମଧ୍ୟ ଅନନ୍ତ ଓ ଅମୋଘ ଅଟେ । ସେ ଲୀଳାଦ୍ୱାରା ହିଁ ଏହି ସଂସାରର

ରଚନା, ପାଳନ ଏବଂ ସଂହାର କରନ୍ତି । କିନ୍ତୁ ସେଥିରେ ସେ ଲିପ୍ତ ହୁଅନ୍ତି ନାହିଁ । ଭଗବାନଙ୍କର ଏହି ଲୀଳା ବହିରଙ୍ଗ ଏବଂ ଅନ୍ତରଙ୍ଗ ଭେଦରେ ପ୍ରମୁଖତଃ ଦୁଇପ୍ରକାର । ମାୟାଶକ୍ତି ସହ ସର୍ଜନେଚ୍ଛାକୁ ଆଶ୍ରୟକରି ଯାହା ନିତ୍ୟଲୀଳାତ୍ମକ ଅଟେ ତାହା ବହିରଙ୍ଗ ଲୀଳା, ଯାହାର ଭୌତିକ କ୍ଷେତ୍ର ଦୃଶ୍ୟମାନ ଜଗତ ଅଟେ । ସ୍ୱରୂପଭୂତା ଶକ୍ତିଗଣଙ୍କ ସହ ପରଂବ୍ରହ୍ମଙ୍କର ଅହୈତୁକ ଆନନ୍ଦମୟୀ ଲୀଳା ଅନ୍ତରଙ୍ଗ ଲୀଳା ଅଟେ ।

ଲୀଳା ବାସ୍ତବତଃ ପୌରାଣିକ ତତ୍ତ୍ୱ ଅଟେ । କିନ୍ତୁ ଏହାର ମୂଳରୂପ ଉପନିଷଦ୍‌ରେ ପ୍ରାପ୍ତହୁଏ । ଉପନିଷଦ୍ ପରମାତ୍ମତତ୍ତ୍ୱକୁ ରସ ବୋଲି କହିଛନ୍ତି । "ରସୋ ବୈ ସଃ" (ତୈତ୍ତିରୀୟୋପନିଷଦ ୨ · ୭ ) । ପୁନଶ୍ଚ ସେ ରସ ସ୍ୱରୂପ ହୋଇ ମଧ୍ୟ ରସପ୍ରାପ୍ତିରେ ଆନନ୍ଦିତ ହୁଏ—"ରସଂ ହ୍ୟେବାୟଂ ଲବ୍‌ଧ୍ୱାଽନନ୍ଦୀ ଭବତି" । ଏହି ରସରୂପ ବ୍ରହ୍ମର ସ୍ୱଭାବ ହେଲା କ୍ରୀଡ଼ା । ସେଥିପାଇଁ ଯୁଗ୍ମ ଅନିବାର୍ଯ୍ୟ । ତେଣୁ ରସବୋଧ ପାଇଁ ରସରୂପ ବ୍ରହ୍ମ ଦୁଇ ଭାଗରେ ବିଭକ୍ତ ହେଲେ । ବୃହଦାରଣ୍ୟକ ଉପନିଷଦ୍‌ରେ କୁହାଯାଇ-ଅଛି ଯେ—ପୁରୁଷବିଧ ପରଂବ୍ରହ୍ମ ଏକରୁ ବହୁ ହେବାକୁ ଇଚ୍ଛା ପ୍ରକାଶ କଲେ ।[୧] "ଏକୋଽହଂ ବହୁସ୍ୟାମ" । ତେଣୁ ସେ ପତିପତ୍ନୀ ରୂପରେ ଦ୍ୱିଧା ବିଭକ୍ତ ହେଲେ । ଶିବ ପୁରାଣରେ କୁହାଯାଇଅଛି—ଶିବ ଶକ୍ତିର ଆଶ୍ରୟ ନେଲେ । ଦୁହିଁଙ୍କର ସଂଘର୍ଷରେ ଜଗତ ସୃଷ୍ଟିହେଲା । ଏହି ସଂସାର ସ୍ତ୍ରୀ-ପୁଂସାତ୍ମକ ଅଟେ । ଶକ୍ତିମାନ୍ ହେଲେ ଶିବ ଅଥବା ପରଂବ୍ରହ୍ମ ଏବଂ ଶକ୍ତି ତାଙ୍କର ମାୟା ଅଟେ ଯାହାକୁ କି ପ୍ରକୃତି ଏବଂ ପୁରୁଷ ମଧ୍ୟ କୁହାଯାଏ ।[୨] ଏହା ହିଁ ବହିରଙ୍ଗ ଲୀଳା—ପରୋକ୍ଷ ସତ୍ତ୍ୱ ବିଳାସ ।

ଏହିପରି ଏହି ଯୁଗଳତତ୍ତ୍ୱର ଉଦ୍ଭବ ଶକ୍ତି ଏବଂ ଶକ୍ତିମାନ୍‌ର ଭାବନାରୁ ହୋଇଅଛି । ଅଗ୍ନି ଓ ଦାହକତ୍ୱ ପରି ଜଗତର ପ୍ରତ୍ୟେକ ପଦାର୍ଥର ନିଜର ଏକ ଶକ୍ତି ଅଛି । ପରମାର୍ଥିକ ରୂପରେ ଜଗତର କାରଣ ପରବ୍ରହ୍ମର ମଧ୍ୟ ଏହିପରି ସମସ୍ତ ଶକ୍ତିର କାରଣଭୂତା ଏକ ମୂଳ ଶକ୍ତି ଅଛି । ଯାହାକିଛି ଏହି ବିଶ୍ୱ ପ୍ରପଞ୍ଚରେ ହେଉଅଛି ତାହାସବୁ ସେହି ଶିବଶକ୍ତି ଅଥବା ପ୍ରକୃତି ପୁରୁଷର ଲୀଳା ବିଳାସ ଅଟେ । ଦୁଇଟିର ରୂପ ଭିନ୍ନ ହେଲେ ମଧ୍ୟ ଦୁହେଁ ଏକ ଓ ଅଭିନ୍ନ ଅଟନ୍ତି ।

ପରଂବ୍ରହ୍ମଙ୍କର ଏହି ମିଥୁନ ରୂପ ଭାରତରେ ଅନାଦି ଅଟେ । ବୈଦିକ ଯୁଗଠାରୁ ଆରମ୍ଭ କରି ପରବର୍ତ୍ତୀ ସମସ୍ତ ସାଧନାର ଅନ୍ତିମ ସୋପାନ ଏହି ମିଥୁନ ବା ଯୁଗଳ

---

୧ । ଆତ୍ମୈବେଦମଗ୍ର ଆସୀତ୍ ପୁରୁଷବିଧଃ । ×× ସ ନୈବରେମେ । ତସ୍ମାଦେକାକୀ ନ ରମତେ । ସ ଦ୍ୱିତୀୟମୈଚ୍ଛତ୍ । ( ବୃହଦାରଣ୍ୟକ, ଚତୁର୍ଥ ବ୍ରାହ୍ମଣ )

୨ । ସ୍ତ୍ରୀ ପୁଂସ ପ୍ରଭବଂ ବିଶ୍ୱଂ ସ୍ତ୍ରୀ ପୁଂସାତ୍ମକ ମେବଚ
ପରମାତ୍ମା ଶିବ ପ୍ରୋକ୍ତଃ ଶିବା ମାୟେତି କଥ୍ୟତେ । ( ଶିବ ପୁରାଣ, ବାୟୁ ସଂହିତା, ଉତ୍ତରଖଣ୍ଡ—ଅ° ୪ )

ରୂପର ଉପାସନାରେ ପ୍ରବିଷ୍ଟ ହୁଏ । ଭାରତର ପ୍ରାୟ ସମସ୍ତ ଧର୍ମମତରେ ଏହି ଯୁଗଳତତ୍ତ୍ୱ ପ୍ରତିଷ୍ଠିତ । ଏହି ଆଦି ଯୁଗଳ ବିଶ୍ୱାସ ଭାରତବର୍ଷରେ ସର୍ବତ୍ର ପରିବ୍ୟାପ୍ତ ଏବଂ ଦର୍ଶନ ସମ୍ପ୍ରଦାୟ ନିରପେକ୍ଷ ରୂପରେ ଭାରତବର୍ଷର ଏକାନ୍ତ ନିଜସ୍ୱ ଅଟେ ।

ଉପନିଷଦ୍ ପରେ ପୁରାଣ ଏହି ବ୍ରହ୍ମ ଏବଂ ଶକ୍ତି ତତ୍ତ୍ୱକୁ ସାକାର ରୂପ ପ୍ରଦାନ କଲା । ନିର୍ଗୁଣ ନିରାକାର ତତ୍ତ୍ୱ ସଗୁଣ ସାକାର ରୂପରେ ଉପାସକଙ୍କ ସମକ୍ଷରେ ପ୍ରକାଶିତ ହେଲା । ଧାର୍ମିକ ଉପାସ୍ୟ ରୂପରେ ପୂର୍ବପ୍ରଚଳିତ ସମସ୍ତ ଈଶ୍ୱର ରୂପ କ୍ରମଶଃ ଶ୍ରୀକୃଷ୍ଣଙ୍କଠାରେ ହିଁ ଅନ୍ତର୍ଭୁକ୍ତ ହୋଇଗଲା । ବେଦର ପ୍ରଧାନ ଦେବତା ଇନ୍ଦ୍ର କ୍ରମଶଃ କୃଷ୍ଣରୂପରେ ବିଲୀନ ହେଲେ । ବିଷ୍ଣୁ ଏବଂ କୃଷ୍ଣଙ୍କଠାରେ ଏକତ୍ୱ ଆରୋପିତ ହେଲା ଏବଂ ଶ୍ରୀକୃଷ୍ଣ ପରଂବ୍ରହ୍ମ ରୂପରେ ପ୍ରତିଷ୍ଠିତ ହେଲେ । ବ୍ରହ୍ମଭର ପୂର୍ଣ୍ଣ ବିକଶିତ ରୂପ, ସମ୍ପୂର୍ଣ୍ଣ ଐଶ୍ୱର୍ଯ୍ୟମଣ୍ଡିତ ସ୍ୱରୂପ ହିଁ ସାକ୍ଷାତ୍ ଭଗବାନ ଶ୍ରୀକୃଷ୍ଣ—ଏହା ହିଁ ସମସ୍ତ ପୁରାଣରେ ସ୍ୱୀକୃତ । ଭାଗବତକାରଙ୍କ ଦୃଷ୍ଟିରେ ଶ୍ରୀକୃଷ୍ଣ ପୂର୍ଣ୍ଣବ୍ରହ୍ମ, ସନାତନ ଏବଂ ପରମାନନ୍ଦ । ଅବତାରବାଦ ହିଁ ଏତାଦୃଶ ସଗୁଣୋପାସନାର ଆଧାର ।

ଭାରତୀୟ ଧର୍ମ ସାହିତ୍ୟରେ ଶ୍ରୀକୃଷ୍ଣଙ୍କର ପରଂବ୍ରହ୍ମ ରୂପରେ ମହତ୍ତ୍ୱପୂର୍ଣ୍ଣ ସ୍ଥାନ କ୍ରମଶଃ ବଢ଼ିବାକୁ ଲାଗିଲା ଏବଂ ଏହିପରି ଭାବରେ ପରଂବ୍ରହ୍ମଙ୍କର ପୂର୍ଣ୍ଣତମ ରୂପରେ ଅଧିଷ୍ଠିତ ହେବାପରେ ହିଁ ଶ୍ରୀକୃଷ୍ଣଙ୍କର ଲୋକାତୀତ ଅନ୍ତରଙ୍ଗ ଲୀଳାକୁ ପ୍ରକାଶ କରିବାକୁ ହିଁ ଶ୍ରୀକୃଷ୍ଣ ଅବତାର ଗ୍ରହଣ କଲେ । ପୁରାଣସମୂହରେ ପ୍ରସିଦ୍ଧି ଲାଭ କରିଥିବା ଦଶାବତାର ମଧ୍ୟରେ "ଶ୍ରୀମଦ୍ ଭାଗବତ" ଭଗବାନ ଶ୍ରୀକୃଷ୍ଣଙ୍କୁ ସ୍ୱୟଂରୂପ ରୂପେ ଚିହ୍ନିତ କରିଛି ଏବଂ ଅବତାର ମଧ୍ୟ ପୁରୁଷାବତାର, ଗୁଣାବତାର ଏବଂ ଲୀଳାବତାର ଭେଦରେ ତ୍ରିବିଧ । ଭାଗବତର ପ୍ରଥମସ୍କନ୍ଧ ତୃତୀୟ ଅଧ୍ୟାୟରେ ଆମେ ଲୀଳାବତାରର ସନକ, ଶୂକର, ନାରଦ, ନର, ନାରାୟଣଠାରୁ ଆରମ୍ଭ କରି ବୁଦ୍ଧ, କୃଷ୍ଣ, କଳ୍କି ଆଦି ଚବିଶ ପ୍ରକାର ରୂପର ପରିଚୟ ପାଇଥାଉଁ । ଏହି ଅବତାରସମୂହର ଧରାଧାମରେ ଅନୁଷ୍ଠିତ ହୋଇଥିବା କ୍ରିୟାକଳାପ ହିଁ ତାଙ୍କର ଲୀଳା ଯାହାର ବହିରଙ୍ଗ ହେତୁ ହେଲା ଧର୍ମ ସଂସ୍ଥାପନା ।

ଶକ୍ତି ଏବଂ ଶକ୍ତିମାନ୍‌ର ନିତ୍ୟ ସମ୍ପର୍କ ଥିବା ହେତୁ ଭଗବାନ ତାଙ୍କର ଶକ୍ତିସହ ପ୍ରତ୍ୟକ୍ଷ ହୁଅନ୍ତି । ତେଣୁ ପ୍ରତ୍ୟେକ ଅବତାର ସହ ତାଙ୍କର ଶକ୍ତିପୂଜା ମଧ୍ୟ ସର୍ବତ୍ର ଅନୁସୃତ ହୁଏ । ଶ୍ରୀକୃଷ୍ଣଙ୍କର ଉପାସନା ପୂର୍ଣ୍ଣବ୍ରହ୍ମ ରୂପରେ ଗୃହୀତ ହେଲା ପରେ ମଧ୍ୟ ଶ୍ରୀକୃଷ୍ଣଙ୍କ ସହ ଶ୍ରୀରାଧାଙ୍କ ଦର୍ଶନ ସାଧକଙ୍କୁ ନ ହୋଇଥିଲା ପର୍ଯ୍ୟନ୍ତ ଭାରତୀୟ ଧର୍ମ ସାଧନା ସମ୍ପୂର୍ଣ୍ଣତା ପ୍ରାପ୍ତ ହୋଇ ନ ଥିଲା । ସହସ୍ର ଗୋପୀଗଣ ଏବଂ ଶ୍ରୀକୃଷ୍ଣଙ୍କ ମଧ୍ୟରେ ପ୍ରେମର ସେହି ସ୍ୱରୂପ ସ୍ପଷ୍ଟ ପ୍ରକଟିତ ହୋଇପାରୁ ନ ଥିଲା । କାରଣ ଶକ୍ତିସ୍ୱରୂପା ମୂଳ ପ୍ରକୃତି ରାଧା ହିଁ ସୃଷ୍ଟିର ଆଧାରଭୂତା । 'ପଦ୍ମପୁରାଣ'ରେ ଏ ସମସ୍ତ ଚରାଚର

ଜଗତର ପାଳନକର୍ତ୍ତ୍ରୀ ହୋଇଥିବାରୁ ବୃନ୍ଦାବନେଶ୍ୱରୀଙ୍କ ନାମ ରାଧା ଅଟେ ।[୧] ପୁରୁଷ ବ୍ରହ୍ମଙ୍କର ଉପାସ୍ୟ ରୂପସହ ବ୍ରହ୍ମଙ୍କର ନିତ୍ୟ ଯୁଗଳ ସ୍ୱରୂପ ମଧ୍ୟ ଅତ୍ୟନ୍ତ ପ୍ରାଚୀନ । ଋକ୍‌ବେଦରେ ପୁରୁଷ ସୂକ୍ତରେ ବ୍ରହ୍ମର ମିଥୁନ ରୂପର ସ୍ପଷ୍ଟ ପରିଚୟ ମିଳେ, ଯେଉଁଠାରେ ଶ୍ରୀ ଏବଂ ଲକ୍ଷ୍ମୀ ବିଷ୍ଣୁଙ୍କର ପତ୍ନୀରୂପେ ଚିତ୍ରିତ ।[୨] ତେଣୁ କୃଷ୍ଣାବତାରର କ୍ରମବିକାଶ ଧାରାରେ ବୈଷ୍ଣବୀୟ ଉପନିଷଦ୍ ଏବଂ ପୁରାଣସମୂହ ଏହି ମିଥୁନ ତତ୍ତ୍ୱକୁ ରାଧାକୃଷ୍ଣଙ୍କ ସହ ଏକାକାର କରିଦେଲେ ।

ପ୍ରାଚୀନ ପୁରାଣମାନଙ୍କ ମଧ୍ୟରୁ କୃଷ୍ଣଲୀଳା ସମ୍ବନ୍ଧୀୟ "ବ୍ରହ୍ମବୈବର୍ତ୍ତ ପୁରାଣ" ରେ ପ୍ରଥମେ ରାଧାଙ୍କର ନାମୋଲ୍ଲେଖ ଦେଖାଯାଏ । ଶ୍ରୀମଦ୍‌ଭାଗବତରେ 'ରାଧା' ଶବ୍ଦର ଉଲ୍ଲେଖ ମଧ୍ୟ ନାହିଁ । କେବଳ ଶ୍ରୀକୃଷ୍ଣଭକ୍ତା ଏକ ପ୍ରଧାନ ସଖୀର ଉଲ୍ଲେଖ ଦେଖାଯାଏ ।

"ବ୍ରହ୍ମବୈବର୍ତ୍ତ ପୁରାଣ" ଚାରି ଖଣ୍ଡରେ ବିଭକ୍ତ, ଯଥା—ବ୍ରହ୍ମଖଣ୍ଡ, ପ୍ରକୃତି ଖଣ୍ଡ, ଗଣେଶ ଖଣ୍ଡ ଓ କୃଷ୍ଣଜନ୍ମ ଖଣ୍ଡ । ଏହାର ବ୍ରହ୍ମଖଣ୍ଡରେ ରାଧାଙ୍କର ଉତ୍ପତ୍ତି ସମ୍ବନ୍ଧରେ ଯେଉଁ ବୃତ୍ତାନ୍ତ ଲିଖିତ ଅଛି, ତହିଁରୁ ଜଣାଯାଏ ଶ୍ରୀକୃଷ୍ଣ ଗୋଲୋକଧାମରେ ରାସମଣ୍ଡଳୀରେ ରାସ ବେଦୀରେ ଉପବେଶନ କଲା ପରେ ତାଙ୍କର ବାମପାର୍ଶ୍ୱରୁ ଏକ ତେଜୋମୟୀ କନ୍ୟାର ଆବିର୍ଭାବ ହେଲା । ଉକ୍ତ କନ୍ୟା ଉଦ୍ଭବ ହେବା ମାତ୍ରେ ପୂର୍ଣ୍ଣ ଯୌବନପ୍ରାପ୍ତ ହୋଇ ବୃନ୍ଦାବନରୁ ପୁଷ୍ପ ଆହରଣ କରି ଶ୍ରୀକୃଷ୍ଣାରାଧନାରେ ତତ୍ପର ହୋଇଉଠିଲା । ତେଣୁ ସେହି କନ୍ୟାର ନାମ ବିଦ୍ୱାନ୍ ବ୍ରାହ୍ମଣଗଣ ରାଧା ଦେଇଛନ୍ତି ।[୩] ତତ୍ପରେ ଏହି ପୁରାଣର ପ୍ରକୃତି ଖଣ୍ଡରେ ରାଧାଙ୍କର ରୂପେଶ୍ୱର୍ଯ୍ୟର ବର୍ଣ୍ଣନା ହୋଇଅଛି । ଏହି ପ୍ରକୃତି ଖଣ୍ଡର ୪୯ ଅଧ୍ୟାୟରେ ଗୋଲୋକରେ ସୁଦାମାଦ୍ୱାରା ରାଧାଙ୍କୁ ଭାରତ ଆସି

---

୧ । ବ୍ରହ୍ମାବିଷ୍ଣୁ ଶିବାଦୀନାଂ ଦେହଧାରଣକାରଣମ୍
ଚରାଚରଂ ଜଗତ୍ ସର୍ବଂ ଯନ୍ମାୟାପରିରମ୍ଭିତମ୍ ।
ବୃନ୍ଦାବନେଶ୍ୱରୀ ନାମ୍ନା ରାଧା ଧାତାନୁକାରଣାତ୍...... ।
( ପଦ୍ମପୁରାଣ, ପାତାଳ ଖଣ୍ଡ, ୭୭ । ୧୭ )

୨ । ଶ୍ରୀଶ୍ଚତେ ଲକ୍ଷ୍ମୀଶ୍ଚ ପତ୍ନ୍ୟୌ......ପୁରୁଷସୂକ୍ତ ( ଶୁକ୍ଳ ଯଜୁର୍ବେଦ, ୩୧ । ୨୨ )

୩ । "ଆବିର୍ବଭୂବ କନ୍ୟୈକା କୃଷ୍ଣସ୍ୟ ବାମପାର୍ଶ୍ୱତଃ
ରାସେ ସମ୍ଭୂୟ ଗୋଲୋକେ ସା ଦଧାବ ହରେ ପୁରଃ
ତେନ ରାଧା ସମାଖ୍ୟାତା ପୁରାବିଦ୍ଭିର୍ଦ୍ୱିଜୋତ୍ତମଃ ।" ( ବ୍ରହ୍ମବୈବର୍ତ୍ତ, ବ୍ରହ୍ମଖଣ୍ଡ )

ଗୋପକନ୍ୟା ହେବାର ଅଭିଶାପ ଦିଆଯାଇଅଛି । ସେହି ରାଧା ହିଁ ବାରାହ କଳ୍ପରେ ଗୋକୁଳରେ ବୃଷଭାନୁ ସୁତା ରୂପରେ ଜନ୍ମଗ୍ରହଣ କରିଛନ୍ତି ।[୧]

ଏହାଛଡ଼ା ବୃହତ୍ ବାମନ ପୁରାଣ, ମହାକୂର୍ମ ପୁରାଣ, ଦେବୀ ଭାଗବତ, ମହାଭାଗବତ ଆଦି ପୁରାଣ ଗ୍ରନ୍ଥ, ପଦ୍ମ ପୁରାଣର ପାତାଳ ଖଣ୍ଡ ଏବଂ ସ୍କନ୍ଦ ପୁରାଣର ବୈଷ୍ଣବ ଖଣ୍ଡ ଇତ୍ୟାଦି ବିଭିନ୍ନ ଗ୍ରନ୍ଥରେ ରାଧାଙ୍କ ସମ୍ବନ୍ଧରେ ବିଭିନ୍ନ ବିବରଣୀ ପରିଦୃଷ୍ଟ ହୁଏ ଏବଂ ଏ ସମସ୍ତ ପୁରାଣରେ ଶ୍ରୀକୃଷ୍ଣଙ୍କର ଆଦ୍ୟା ପ୍ରକୃତି ହୋଇଥିବା ହେତୁ ଶ୍ରୀରାଧାଙ୍କୁ ପ୍ରାଧାନ୍ୟ ଦିଆଯାଇ ଶ୍ରୀରାଧାକୃଷ୍ଣାତ୍ମକ ଯୁଗଳତତ୍ତ୍ୱ ବିଦ୍ୟମାନ ହୋଇଅଛି । "ବ୍ରହ୍ମାଣ୍ଡ ପୁରାଣ" ରାଧା ସ୍ତବରେ କୃଷ୍ଣ ଏବଂ ରାଧାଙ୍କୁ ଏକ ପ୍ରାଣ, ଏକ ଆତ୍ମାରୂପେ ସ୍ୱୀକାର କରାଯାଇଅଛି । ଏତଦ୍‌ବ୍ୟତୀତ ମତ୍ସ୍ୟ ପୁରାଣ, ପଦ୍ମ ପୁରାଣ, ନାରଦ ପଞ୍ଚ ରାତ୍ର ଇତ୍ୟାଦିରେ ବିଭିନ୍ନ ଦେବଦେବୀଙ୍କ ଗଣନା ପ୍ରସଙ୍ଗରେ 'ରାଧା'ଙ୍କର ଦେବୀ ରୂପରେ ନାମୋଲ୍ଲେଖ ମିଳେ ଏବଂ ଏହି ଦେବୀ ଶକ୍ତିରୂପା ଅଟନ୍ତି । ବ୍ରହ୍ମବୈବର୍ତ୍ତ ପୁରାଣରେ ମଧ୍ୟ ରାଧାଙ୍କ ବିନା କୃଷ୍ଣ ନିଜକୁ ଜଡ଼ବୋଲି ସ୍ୱୀକାର କରିଛନ୍ତି ।[୨] ରାଧା ତାପିନୀ ଉପନିଷଦ୍‌ରେ ଉଲ୍ଲେଖ ଅଛି ଯେ ରାଧା ଏବଂ କୃଷ୍ଣ ଏକ ରସତତ୍ତ୍ୱ ଅଟନ୍ତି । କିନ୍ତୁ କ୍ରୀଡ଼ାପାଇଁ ହିଁ କେବଳ ଦ୍ୱିଧା ବିଭକ୍ତ ହେଲେ ।[୩] 'ଗର୍ଗ ସଂହିତା'ରେ କୁହାଯାଇଅଛି—ଯେଉଁ ବ୍ୟକ୍ତି ରାଧା ଏବଂ କୃଷ୍ଣଙ୍କଠାରେ ଅଭେଦ ଜ୍ଞାନ କରେ ସେ ହିଁ ବ୍ରହ୍ମପଦକୁ ଲାଭକରେ ।[୪] ବ୍ରହ୍ମ ସଂହିତା, ଯୁଗ୍ମତତ୍ତ୍ୱ ସମୀକ୍ଷା ( ୨୫ ପୃ. )ରେ "ଯଃ କୃଷ୍ଣଃ ସାପି ରାଧା । ଯା ରାଧ, କୃଷ୍ଣ ଏବ ସଃ" ବୋଲି ଉଲ୍ଲେଖ ଅଛି । ଉପର୍ଯ୍ୟୁକ୍ତ ରାଧାକୃଷ୍ଣରୂପୀ ନିତ୍ୟ ଯୁଗ୍ମ ବୈଷ୍ଣବଗଣଙ୍କ ପାଇଁ ରସୋ ବୈ ସଃ ର ସାକାର ରୂପ ଅଟେ । ରାଧା ଏବଂ କୃଷ୍ଣ ଏକ ହିଁ ରସର ଦୁଇଟି ସ୍ୱରୂପ ମାତ୍ର ଅଟନ୍ତି ଏବଂ ସର୍ବଥା ଅଭେଦ ଅଟନ୍ତି । 'ସାମ ରହସ୍ୟୋପନିଷଦ୍' ରେ ଅଛି—ସେହି ଅନାଦି ପୁରୁଷ ସ୍ୱୟଂ ରାଧିକା ରୂପ ଧାରଣକରି ସମାରାଧନ ତତ୍ପର ହେଲେ । ସେଥିପାଇଁ

---

୧ । ଶାପ ତ୍ୱଂ ସୁଦାମା ଚ ତ୍ୱମିଁ ତୋ ଗଚ୍ଛ ଭାରତମ୍
ଭବଗୋପୀ ଗୋପକନ୍ୟା ମୁଖ୍ୟାଭିଃ ସ୍ୱାମିରେବ ଚ ।
( ବ୍ରହ୍ମବୈବର୍ତ୍ତ, ପ୍ରକୃତି ୪୯ । ୩୦, ୩୧ )
"ରାଧା ଜଗାମ ବାରାହେ ଗୋକୁଳଂ ଭାରତେ ସତୀ
ବୃଷଭାନୋଶ୍ଚ ବୈଶ୍ୟସ୍ୟ ସା ଚ କନ୍ୟା ବଭୂବହ ।" ( ୪୯—୩୬ )

୨ । "ତ୍ୱୟା ବିନାହଂ ନର୍ଜୀବୋ ହ୍ୟଶକ୍ତଃ ସର୍ବକର୍ମସୁ
ତ୍ୱୟା ବିନା ଜଡ଼ସ୍ତାହଂ ସର୍ବତ୍ର ଚ ନ ଶକ୍ତିମାନ୍
ସର୍ବଶକ୍ତିସ୍ୱରୂପା ତ୍ୱଂ ତ୍ୱମାଗଚ୍ଛ ମମାନ୍ତିକମ୍ ।" ( ପ୍ରକୃତି ଖଣ୍ଡ—୫୫—୮୪, ୯୦ )

୩ । "ଯେଽୟଂ ରାଧା ଯଶ୍ଚ କୃଷ୍ଣୋ ରସାବ୍ଧିର୍ଦେହେନୈକଃ କ୍ରୀଡ଼ନାର୍ଥଂ ଦ୍ୱିଧାଽଭୂତ୍ ।"
( ରାଧିକା ତାପିନ୍ୟୁପନିଷଦ୍—୧୨ )

୪ । ଯେ ରାଧିକାୟାଂ ମୟି କେଶବେ ମନାଗ୍‌ଭେଦେନ ପଶ୍ୟନ୍ତି ହି ଦୁଗ୍ଧଶୌକ୍ଲ୍ୟବତ୍ତୁ ।
ତେ ଏବ ମେ ବ୍ରହ୍ମପଦଂ ପ୍ରୟାନ୍ତି । ( ଗର୍ଗ ସଂହିତା ବୃନ୍ଦାବନ ଖଣ୍ଡ—୧୨—୩୨ )

ବେଦଜ୍ଞ ସେହି ରସିକାନନ୍ଦଙ୍କୁ ରାଧା କହନ୍ତି ।[୧] ରାଧିକୋପନିଷଦ୍‌ରେ ରାଧା, ରାସେଶ୍ୱରୀ, କୃଷ୍ଣମନ୍ତ୍ରାଧିଦେବତା, ବୃନ୍ଦାବନ ବିହାରିଣୀ, ଗୋପୀମଣ୍ଡଳ ପୂଜିତା, ଶ୍ରୀକୃଷ୍ଣବଲ୍ଲଭା, ଗାନ୍ଧର୍ବା ଇତ୍ୟାଦି ଲୀଳାତ୍ମକ, ଆଧ୍ୟାତ୍ମିକ ଓ ତାତ୍ତ୍ୱିକ ଭେଦରେ ରାଧାଙ୍କର ବହୁ ନାମର ଉଲ୍ଲେଖ ମିଳେ ।

ସମସ୍ତ ଉପନିଷଦ୍ ସମାନଭାବରେ ପ୍ରାଚୀନ ନୁହନ୍ତି । ରାଧାକୃଷ୍ଣ ସମ୍ବନ୍ଧୀୟ ଉପନିଷଦ୍ ରଚନାକାଳ ଅତ୍ୟନ୍ତ ଅର୍ବାଚୀନ । ଆଜି ରାଧାଙ୍କ ବିନା କୃଷ୍ଣଙ୍କ କଳ୍ପନା ମଧ୍ୟ କେହି କରିପାରୁ ନାହିଁ । କିନ୍ତୁ ରାଧାଙ୍କ ଉପାସନା ଭାରତରେ ଅତ୍ୟନ୍ତ ଅର୍ବାଚୀନ ହୋଇଥିଲେ ମଧ୍ୟ ଏତେ ଅଳ୍ପ ସମୟ ମଧ୍ୟରେ ରାଧାଙ୍କର ଏତାଦୃଶ ବିବିଧ ଏବଂ ଅନନ୍ତ ସ୍ୱରୂପ ଦେଖିବାକୁ ମିଳେ ଯାହାର ସମତୁଲ୍ୟ ଅନ୍ୟ କୌଣସି ଦେବଦେବୀ ହୋଇପାରି ନାହାନ୍ତି । ସାଧାରଣ ଗୋପୀଠାରୁ ଆରମ୍ଭକରି ପରାତ୍ପର ବ୍ରହ୍ମ ପର୍ଯ୍ୟନ୍ତ ବିଭିନ୍ନରୂପରେ ଶ୍ରୀରାଧା ବର୍ତ୍ତମାନ ଅବସ୍ଥିତା । କର୍ମଜ୍ଞାନ, ଯୋଗ, ତନ୍ତ୍ର ଏବଂ ଭକ୍ତିର ସମସ୍ତ ଉପାସନା ପଦ୍ଧତିରେ ଶ୍ରୀରାଧାଙ୍କର ସତ୍ତା କୌଣସି ନା କୌଣସି ରୂପରେ ପରିବ୍ୟାପ୍ତ ହୋଇଅଛି ।

ଏହି ରାଧା ଚରିତ ବା ରାସଲୀଳା ପ୍ରସଙ୍ଗ ବ୍ୟତୀତ ଶ୍ରୀକୃଷ୍ଣ ତତ୍ତ୍ୱ ଅସମ୍ପୂର୍ଣ୍ଣ ରହେ । ଏହିପରି ଭାବରେ ରାଧାକୃଷ୍ଣ ତଥା ଯୁଗଳତତ୍ତ୍ୱର ମାଧୁର୍ଯ୍ୟମୟ ସ୍ୱରୂପର ବିକାଶରେ ବିଭିନ୍ନ ସାହିତ୍ୟ, ପୁରାଣ ଏବଂ ତନ୍ତ୍ର ଗ୍ରନ୍ଥର ଗୁରୁତ୍ୱପୂର୍ଣ୍ଣ ଅବଦାନ ଥିଲେହେଁ ବୈଷ୍ଣବ ସମ୍ପ୍ରଦାୟର ଉଦ୍ଭବରେ ହିଁ ଶୀଘ୍ର ସମ୍ପନ୍ନ ହୋଇଥିଲା । ଏହି ବୈଷ୍ଣବ କୃଷ୍ଣଭକ୍ତ ସମ୍ପ୍ରଦାୟସମୂହର ଉପାସନାର ମୂଳାଧାର 'ରସ' ଏବଂ ତାହା ପ୍ରେମ-ତତ୍ତ୍ୱାଶ୍ରିତ ଅଟେ । ଏହି ପ୍ରେମ ଲକ୍ଷଣ ଭକ୍ତିର ପ୍ରବର୍ତ୍ତକମାନଙ୍କ ମଧ୍ୟରେ ଚୈତନ୍ୟ, ବଲ୍ଲଭାଚାର୍ଯ୍ୟ, ନିମ୍ବାର୍କାଚାର୍ଯ୍ୟ, ସ୍ୱାମୀ ହରିଦାସ ଆଦି ବିଶିଷ୍ଟ ସ୍ଥାନ ଅଧିକାର କରିଛନ୍ତି । ନାରଦ ଏବଂ ଶାଣ୍ଡିଲ୍ୟଙ୍କ ଭକ୍ତିସୂତ୍ରରେ ଗୁଣରହିତ, କାମନାରହିତ, ପ୍ରତିକ୍ଷଣ ବର୍ଦ୍ଧମାନ, ବିଚ୍ଛେଦରହିତ, ସୂକ୍ଷ୍ମାତିସୂକ୍ଷ୍ମ କେବଳ ଅନୁଭବୈକଗମ୍ୟ ସାଂସାରିକ ପ୍ରେମଠାରୁ ପୃଥକ୍ ପ୍ରେମର ଚିତ୍ର ଅଙ୍କିତ ହୋଇଛି । ଏତାଦୃଶ ପ୍ରେମକୁ ଏହି ପରାଧିର ଭୂମି ଉପରେ ଅବସ୍ଥିତ କରାଇ ତାକୁ ଭକ୍ତିର ସାଧନରୂପେ ଗ୍ରହଣ କରିବା ହିଁ ଏହି ବୈଷ୍ଣବୀୟ ଭକ୍ତିମାର୍ଗର ବିଶେଷତ୍ୱ ।

ବୈଷ୍ଣବଗଣ ଭଗବାନଙ୍କର ଶକ୍ତିର ବିଭିନ୍ନ ରୂପ ସ୍ୱୀକାର କରିଛନ୍ତି । ପ୍ରଥମ ହେଲା, ମାୟାଶକ୍ତି ଯାହାକି ବ୍ରହ୍ମ ସହ ମିଳିତ ହୋଇ ବାହ୍ୟଲୀଳା ସମ୍ପାଦନ କରିଥାଏ ।

---

୧ । "ଅନାଦ୍ୟୋଽୟଂ ପୁରୁଷ ଏକ ଏବାସ୍ତି ତଦେବଂ ଦ୍ୱିଧାରୂପଂ ବିଧାୟ ସର୍ବଂ ସମାହରତି । ସ୍ୱୟମେବ ରାଧିକାରୂପଂ ବିଧାୟ ସମାରାଧନ ତତ୍ପରୋଽଭୂତ୍ । ତସ୍ମାତ୍ତାଂ ରାଧାଂ ରସିକାନନ୍ଦାଂ ବେଦବିଦୋ ବଦନ୍ତି······ଅତୋଲୋକେ ବେଦେ ଚ ରାଧା ଗୀୟତେ ।"

( ସାମ ରହସ୍ୟୋପନିଷଦ୍ )

ବିଶ୍ଵସ୍ତରେ ସ୍ୱରୂପ-ଶକ୍ତି । ଏହାହିଁ ଅନ୍ତରଙ୍ଗା ଶକ୍ତି । ଏହି ସ୍ୱରୂପ ଶକ୍ତି ପୁଣି ତ୍ରିବିଧ । ଭଗବାନଙ୍କର ସଚ୍ଚିଦାନନ୍ଦ ଗୁଣାନୁସାରେ ତାହା ସନ୍ଧିନୀ, ସମ୍ବିତ୍ ଏବଂ ହ୍ଲାଦିନୀ ନାମରେ ଖ୍ୟାତ । ଭଗବାନଙ୍କର ଶକ୍ତିର ପୂର୍ଣ୍ଣତମ ରୂପ ହେଉଛି ହ୍ଲାଦିନୀ ଶକ୍ତି ଏବଂ ତାହା ହିଁ ଶ୍ରୀରାଧା । ଶ୍ରୀରାଧା ଏବଂ କୃଷ୍ଣଙ୍କର ନିତ୍ୟ ଅନ୍ତରଙ୍ଗ ଲୀଳା ହିଁ ରସରୂପ ପରଂବ୍ରହ୍ମଙ୍କର ପୂର୍ଣ୍ଣାନନ୍ଦଲୀଳା ଅଟେ ଏବଂ ତାହାର ଚିନ୍ତନ, ସ୍ମରଣ, ଧ୍ୟାନ, ଭଜନ ଓ ଗାନ ଦ୍ୱାରା ଭକ୍ତ ଏହି ପୂର୍ଣ୍ଣାନନ୍ଦ ଲାଭ କରିଥାଏ ।

ଏହିପରି ବିଦ୍ୱାନ୍‌ଗଣ ରାଧାକୃଷ୍ଣ ଲୀଳା ତତ୍ତ୍ୱକୁ ବିଭିନ୍ନରୂପରେ ବିଶ୍ଳେଷଣ କରିଥିଲେ ହେଁ ଲୀଳା କେବଳ ବୁଦ୍ଧିଦ୍ୱାରା ବିଶ୍ଳେଷଣୀୟ ନୁହେଁ । ଏହା ଅନୁଭବର ବସ୍ତୁ । ଏହା ତତ୍ତ୍ୱାନୁଭବ ନୁହେଁ । ଏହା ଆନନ୍ଦାନୁଭବ ଅଟେ । ଶ୍ରୀରାଧା ଏବଂ କୃଷ୍ଣଙ୍କର ପରସ୍ପର ପ୍ରୀତି ହିଁ ଏହି ଲୀଳାରସର ଆଧାର । ଶ୍ରୀରାଧା ହିଁ ପ୍ରେମତତ୍ତ୍ୱ ଏବଂ ପ୍ରେମର ସାକାର ମୂର୍ତ୍ତି । ତେଣୁ ଭଗବାନ ଶ୍ରୀକୃଷ୍ଣଙ୍କର ଲୀଳା କଥା ରସ ନିଷେବଣ ବ୍ୟତିରେକ ସଂସାର ସିନ୍ଧୁ ତରିବା ସମ୍ଭବ ନୁହେଁ । ତେଣୁ ଭାଗବତଠାରୁ ଆରମ୍ଭ କରି ପ୍ରାୟ ସମସ୍ତ ପୁରାଣ ଓ ବିଭିନ୍ନ ସାହିତ୍ୟରେ ଶ୍ରୀକୃଷ୍ଣଙ୍କର ମଧୁର ରୂପକୁ ପ୍ରାଧାନ୍ୟ ଦିଆଯାଇ ତାଙ୍କର ଅଶେଷ ଲୀଳାଗାନ କରାଯାଇଅଛି । ଏହି ମାଧୁର୍ଯ୍ୟମଣ୍ଡିତ ଉପାସନା ତଥା ଲୀଳାଗାନ ପୂର୍ଣ୍ଣବିକାଶ ଲାଭ କଲା ୧୬ଶ ଶତାବ୍ଦୀରେ । ଏହି ସମୟର ଭକ୍ତିର ଆଧାର ହେଲା ଭଗବାନଙ୍କର ଲୀଳା ତତ୍ତ୍ୱ ।

ଶ୍ରୀକୃଷ୍ଣଙ୍କର ଏହି ପ୍ରକଟ ( ବାହ୍ୟ ) ଲୀଳା କ୍ଷେତ୍ରାନୁସାରେ ତିନି ଭାଗରେ ବିଭକ୍ତ ହୋଇଅଛି । ବ୍ରଜଲୀଳା, ମଥୁରାଲୀଳା ଓ ଦ୍ୱାରକାଲୀଳା । ବ୍ରଜଲୀଳା ହିଁ ସର୍ବାପେକ୍ଷା ସୂକ୍ଷ୍ମଲୀଳା । ଏହି ବ୍ରଜଲୀଳାରେ ବାତ୍ସଲ୍ୟ, ସଖ୍ୟ ତଥା ବୃନ୍ଦାବନରେ ଗୋପୀଗଣ ଓ ରାଧାଙ୍କ ସହ ହୋଇଥିବା ରସମୟୀ ଶୃଙ୍ଗାରାଦି ବିନୋଦ ଅନ୍ତର୍ଗତ । ଏଥିମଧ୍ୟରେ ଶୃଙ୍ଗାରଲୀଳା ଭକ୍ତିରସ ଦୃଷ୍ଟିରୁ ଅନ୍ୟତମ । ବ୍ରଜଲୀଳାର ଆତ୍ମା ହେଲା ବୃନ୍ଦାବନର ଶୃଙ୍ଗାରଲୀଳା । ପରମାନନ୍ଦଙ୍କର ନିତ୍ୟବିଳାସର ଭୂପୃଷ୍ଠରେ ଅବତରଣ ଏବଂ ନିଷ୍କାମ ଭାବରେ ସେହି ଅନନ୍ତ ଲୀଳାର ଗାନ ତଥା ପ୍ରାପ୍ତି ବୈଷ୍ଣବୀୟ ଭକ୍ତଗଣଙ୍କର ଚରମ ଲକ୍ଷ୍ୟ ଏବଂ ଏହି ଲୀଳାନନ୍ଦ ପ୍ରାପ୍ତି ବ୍ରହ୍ମାନନ୍ଦଠାରୁ ମଧ୍ୟ ଶ୍ରେୟସ୍କର ବୋଲି ସେମାନଙ୍କର ମତ । ତେଣୁ ବୃନ୍ଦାବନର ଏହି ରସମୟୀ ଲୀଳା ପରମ ମାଧୁର୍ଯ୍ୟମୟୀ ହୋଇଥିବା ଦୃଷ୍ଟିରୁ ସବୁଠାରୁ ଶ୍ରେଷ୍ଠଲୀଳାରୂପେ ପରିଗଣିତ ହୋଇଅଛି ।

## ଓଡ଼ିଆ କୃଷ୍ଣ ସାହିତ୍ୟ ଓ କୃଷ୍ଣ କେଳି ତରଙ୍ଗିଣୀ

ରାଧାକୃଷ୍ଣଙ୍କର ପ୍ରଣୟ ରସ ବର୍ଣ୍ଣନା ଭିତ୍ତିରେ କୃଷ୍ଣ କେଳି ତରଙ୍ଗିଣୀ ରଚିତ ; କିନ୍ତୁ ଏହି କୃଷ୍ଣଲୀଳା ରସ ବର୍ଣ୍ଣନା ଅର୍ବାଚୀନ ନୁହେଁ । ବହୁ ପୂର୍ବରୁ ପ୍ରାୟ ଖ୍ରୀଷ୍ଟୀୟ ପ୍ରଥମ ଶତକରୁ ରାଧାକୃଷ୍ଣ ଲୀଳା ବର୍ଣ୍ଣିତ କାବ୍ୟ କବିତାମାନ ସଂସ୍କୃତ ତଥା ପ୍ରାକୃତ ଭାଷାରେ ରଚିତ ହୋଇ ଭାରତୀୟ ସାହିତ୍ୟାଗାରର ସୌନ୍ଦର୍ଯ୍ୟ ବର୍ଦ୍ଧନ କରିଥିବାର ପ୍ରମାଣ

ମିଳେ । ଶୃଙ୍ଗାର ବା ଆଦିରସାଶ୍ରିତ ରାଧାକୃଷ୍ଣ କେଳି ବର୍ଣ୍ଣନା ଭାରତୀୟ କାବ୍ୟ ସାହିତ୍ୟର ପରମ୍ପରା କହିଲେ ଅତ୍ୟୁକ୍ତି ହେବ ନାହିଁ । ଉତ୍କଳରେ ଦ୍ୱାଦଶ ଶତାବ୍ଦୀର ଭକ୍ତକବି ଜୟଦେବ ସଂସ୍କୃତରେ ପ୍ରସିଦ୍ଧ ଗୀତଗୋବିନ୍ଦ ରଚନା କରି ରାଧାକୃଷ୍ଣ ଯୁଗଳ ଭକ୍ତି ମାର୍ଗର ପଥପ୍ରଦର୍ଶକ ହୋଇଥିଲେ । କାଳକ୍ରମେ ରାଧାକୃଷ୍ଣ ପ୍ରେମ କାବ୍ୟଧାରା ସଂସ୍କୃତ ସାହିତ୍ୟରୁ ବହିର୍ଗତ ହୋଇ ଅନ୍ୟ ସମସ୍ତ ପ୍ରାଦେଶିକ ଭାଷା କ୍ଷେତ୍ରରେ ପ୍ରବିଷ୍ଟ ହେଲା । ହିନ୍ଦୀର ଭକ୍ତକବି ସୁର ଦାସ, ମୈଥିଳୀ ଭାଷାରେ ବିଦ୍ୟାପତି ଏବଂ ବଙ୍ଗଳାରେ ଚଣ୍ଡୀ ଦାସାଦିଙ୍କର ରାଧାକୃଷ୍ଣ ପ୍ରେମ କବିତାବଳୀ ବିଶେଷ ଭାବରେ ଉଲ୍ଲେଖଯୋଗ୍ୟ । ପରବର୍ତ୍ତୀ ବୈଷ୍ଣବ କବିଗଣ ଏହି ଗୀତଗୋବିନ୍ଦର ଭାଷା, ଭାବ ଏବଂ ଶୈଳୀର ପୂର୍ଣ୍ଣରୂପରେ ଅନୁସରଣ କରି ରାଧାକୃଷ୍ଣଲୀଳାକୁ ଅଳଙ୍କାର ଶାସ୍ତ୍ରୋପଯୋଗୀ କରି ଏହି ପନ୍ଥାର ଅନୁଗାମୀ କବିମାନଙ୍କ ମାର୍ଗ ସୁଗମ କରି ଦେଇଛନ୍ତି । ସମଗ୍ର ଓଡ଼ିଶାର ମଧ୍ୟଯୁଗରେ ରାଧାକୃଷ୍ଣ ଲୀଳାତ୍ମକ ତଥା ଧର୍ମମୂଳକ ସାହିତ୍ୟ ଚର୍ଚ୍ଚା ବିକାଶ ହୋଇ ପଡ଼ିଥିଲା । ଜାତି, ବର୍ଣ୍ଣ, ବୟସ ଓ ଯୋଗ୍ୟତା ନିର୍ବିଶେଷରେ ଗୃହେ ଗୃହେ ରାଧାକୃଷ୍ଣ ଉପାସନା ତଥା ଧର୍ମମୂଳକ କାବ୍ୟ ସାହିତ୍ୟ ଚର୍ଚ୍ଚା ଉତ୍କଳୀୟ ଜାତୀୟ ସଂସ୍କୃତିର ଏକ ଅବିଚ୍ଛେଦ୍ୟ ଅଙ୍ଗରୂପେ ପ୍ରତିଭାତ ହେଲା ଏବଂ ମୁଖ୍ୟତଃ କୃଷ୍ଣଙ୍କର ଜୀବନ ଚରିତ ତଦାମୀନ୍ତନ ଓଡ଼ିଶାର ଅଜଳନ କାବ୍ୟଗ୍ରନ୍ଥ ସୃଷ୍ଟିର ଥିଲା ସର୍ବଶ୍ରେଷ୍ଠ ଉପାଦାନ । ବୃନ୍ଦାବନରେ କୃଷ୍ଣଙ୍କର ଗୋପଗୋପୀଙ୍କ ସହ ଲୀଳା, ବୃନ୍ଦାବନରୁ ମଥୁରା ଯାତ୍ରା ତଥା ଦ୍ୱାରକାରେ ତାଙ୍କର ରାଜତ୍ୱ ଇତ୍ୟାଦି କୃଷ୍ଣଜୀବନର ବାହ୍ୟ ଘଟଣାବଳୀ ବ୍ୟତୀତ କୃଷ୍ଣ ରସ ଓ ଭକ୍ତିଧର୍ମର ଆଧ୍ୟାତ୍ମିକ ତତ୍ତ୍ୱ ବ୍ୟାଖ୍ୟାନ ମଧ୍ୟ କାବ୍ୟ, ଚଉପଦୀ, ଚମ୍ପୂ, ଚଉତିଶା ଇତ୍ୟାଦି ତତ୍କାଳୀନ ସାହିତ୍ୟର ବିଭିନ୍ନ ବିଭାବରେ ପରିପୂର୍ଣ୍ଣ ହୋଇଅଛି ଏବଂ ଏହି କୃଷ୍ଣଭକ୍ତ କବିମାନଙ୍କର ସଂଖ୍ୟା ଅଗଣିତ । ସେମାନଙ୍କ ମଧ୍ୟରୁ ଧନକୃଷ୍ଣ ଦାସଙ୍କର ରସକଲ୍ଲୋଳ, ଅଭିମନ୍ୟୁ ସାମନ୍ତ ସିଂହାରଙ୍କର ବିଦଗ୍ଧ ଚିନ୍ତାମଣି, ଭକ୍ତ ଚରଣ ଦାସଙ୍କର ମଥୁରା ମଙ୍ଗଳ ଇତ୍ୟାଦି ଆଳଙ୍କାରିକ କାବ୍ୟ ହିସାବରେ ସ୍ମରଣୀୟ । ଏତଦ୍‌ବ୍ୟତୀତ ରୀତିଯୁଗର ସର୍ବଶ୍ରେଷ୍ଠ ଆଳଙ୍କାରିକ କବି ଉପେନ୍ଦ୍ରଭଞ୍ଜ, ଭକ୍ତକବି ବନମାଳୀ, ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା, ରଘୁନାଥ ଭଞ୍ଜ, ଦେବଦୁର୍ଲ୍ଲଭ ଦାସ, ଭୂପତି ପଣ୍ଡିତ, ପିଣ୍ଡିକ ଶ୍ରୀଚନ୍ଦନ ପ୍ରଭୃତି ଅସଂଖ୍ୟ କବି ଉତ୍କଳୀୟ କୃଷ୍ଣକାବ୍ୟ ଧାରାର ଅନାବିଳ ଉତ୍ସ କହିଲେ ଚଳେ । ଚୈତନ୍ୟ ଦେବଙ୍କ ବହୁ ପୂର୍ବରୁ ମଧ୍ୟ ଓଡ଼ିଶାର କାବ୍ୟ କବିତାମାନଙ୍କରେ ରାଧାକୃଷ୍ଣ ଲୀଳା ସୁଦୃଢ଼ ଓ ଉଚ୍ଚ ସ୍ଥାନର ଅଧିକାରୀ ହୋଇ ତାଙ୍କ ଆବିର୍ଭାବର ବହୁବର୍ଷ ପର୍ଯ୍ୟନ୍ତ ଅସଂଖ୍ୟ ଭକ୍ତ ଓ କବିଗଣଙ୍କ ଦ୍ୱାରା ସେହି କାବ୍ୟ ସାହିତ୍ୟ ଧାରା ଅବ୍ୟାହତ ରହି ଆସିଥିଲା । ବହୁ ରାଜା ଓ ରାଣୀ ମଧ୍ୟ ଆଳଙ୍କାରିକ ରୀତିରେ କାବ୍ୟଗୁଚ୍ଛ ରଚନା କରି ଅମରତ୍ୱ ଲାଭର ପ୍ରୟାସୀ ହୋଇଥିବା ଜଣାଯାଏ ।

ଅଷ୍ଟାଦଶ ଶତାବ୍ଦୀର ମଧ୍ୟଭାଗରେ ଗଜପତି ପୁରୁଷୋତ୍ତମ ଅନଙ୍ଗଭୀମ ଦେବ ଏତାଦୃଶ ବୈଷ୍ଣବୀୟ କୃଷ୍ଣଭକ୍ତି ସ୍ରୋତରେ ଉଦ୍‌ପ୍ଲାବିତ ହୋଇ "କୃଷ୍ଣ କେଳି ତରଙ୍ଗିଣୀ" ରଚନା

କରିଥିବା ବୋଧହୁଏ । ବୃନ୍ଦାବନରେ କେବଳ ରାଧାକୃଷ୍ଣଙ୍କର ଶୃଙ୍ଗାରାତ୍ମକ ମାଧୁର୍ଯ୍ୟମଣ୍ଡିତ ଏକ ମଧ୍ୟାହ୍ନର ଲୀଳା ବିଶଗୋଟି ଛାନ୍ଦରେ କବି ଏହି କାବ୍ୟଟିରେ ବର୍ଣ୍ଣନା କରିଛନ୍ତି ।

କଥାବସ୍ତୁ

ପ୍ରଥମ ଛାନ୍ଦରେ ମଙ୍ଗଳାଚରଣ କରି କବି କୃଷ୍ଣଙ୍କର ଅଶେଷ ସ୍ତୁତିଗାନ ଛଳରେ କୃଷ୍ଣ ଜନ୍ମଠାରୁ ଆରମ୍ଭ କରି ସଂକ୍ଷେପରେ ସମସ୍ତ ଜୀବନଚରିତ ବର୍ଣ୍ଣନା କରିଛନ୍ତି । ତତ୍ପରେ ବୃନ୍ଦାବନଲୀଳା ପ୍ରସଙ୍ଗ ଉତ୍ଥାପନ କରି ମଧ୍ୟାହ୍ନ ଲୀଳା ବର୍ଣ୍ଣନରେ ଅଗ୍ରସର ହୋଇଛନ୍ତି ।

ପ୍ରଭାତ କାଳରେ କୃଷ୍ଣ ବନ୍ଧୁବୃନ୍ଦସହ ବୃନ୍ଦାବନ ଯିବାପରେ ଶ୍ରୀରାଧା ମଧ୍ୟ ସୂର୍ଯ୍ୟ ପୂଜା କରିବା ଛଳରେ ଲଳିତା, ବିଶାଖା ଆଦି ସଖୀ ଓ ଅନ୍ୟାନ୍ୟ ସହଚରୀଗଣଙ୍କ ସଙ୍ଗରେ ସୂର୍ଯ୍ୟ ପୂଜା ଉପକରଣାଦି ନେଇ ଶୀଘ୍ର ବୃନ୍ଦାବନରେ ପ୍ରବେଶ କରି କୁନ୍ଦଲତା ନାମ୍ନୀ ସହଚରୀ ହସ୍ତରେ ଏକ ପୁଷ୍ପମାଳା ଏବଂ କର୍ପୂର, ତାମ୍ବୁଳାଦି ଶୃଙ୍ଗାର ଉପକରଣ ପ୍ରଦାନ କରି କୃଷ୍ଣଙ୍କ ନିକଟକୁ ଗୁପ୍ତରେ ପ୍ରେରଣ କଲେ । ତତ୍ପରେ ସହଚରୀବର୍ଗ ଅତ୍ୟନ୍ତ କୌତୂହଳବଶତଃ ସେହି ମନୋହର ବୃନ୍ଦାବନ ପ୍ରଦେଶର ଶୋଭା ରାଧାଙ୍କୁ ସନ୍ଦର୍ଶନ କରାଇଲେ । ସଖୀ ଲଳିତା ମଧ୍ୟ ରାଧାଙ୍କ ସମକ୍ଷରେ ବୃନ୍ଦାବନ ତଥା ଯମୁନା ନଦୀର ଅପାସୋରା ଶ୍ରୀ ର ବର୍ଣ୍ଣନା କଲେ । ଏହାପରେ କୃଷ୍ଣଗତପ୍ରାଣା ହୋଇ ବୃନ୍ଦାବନ ମଧ୍ୟରେ ଗମନ କରୁଥିବାବେଳେ ବକୁଳ ବାଟିକା ମଧ୍ୟରେ ଧନିଷ୍ଠିକା ସହ ଏକାନ୍ତରେ ରାଧିକାଙ୍କର ସାକ୍ଷାତ ହେଲା ଏବଂ ତାହାଠାରୁ କୃଷ୍ଣଙ୍କର ବିରହୋଚ୍ଛ୍ୱାସ ତଥା କାମବେଦନା ଶ୍ରବଣ କରି ରାଧା ମଦନଭାବରେ ଅଧୀର ହେଲେ । ସେ ମୂର୍ଚ୍ଛିତା ହୁଅନ୍ତେ ସଖୀଗଣ ତାଙ୍କୁ ସାନ୍ତ୍ୱନା ଦେଲେ । ତହୁଁ ଲଳିତା ରସମଞ୍ଜରୀଙ୍କୁ କୃଷ୍ଣଙ୍କ ନିକଟରେ ରାଧାଙ୍କର ଆଗମନ ସନ୍ଦେଶ ସହଞ୍ଚାଇବାପାଇଁ ପଠାଇଲେ । ରାଧା ଚେତନା ପାଇ ବୃନ୍ଦାବନର କାମୋଦ୍ଦୀପକ ପ୍ରାକୃତିକ ଦୃଶ୍ୟାବଳୀ ଉପଭୋଗ କରି ଅଗ୍ରସର ହୁଅନ୍ତେ ପଥ ମଧ୍ୟରେ ହଠାତ୍ ସହଚରୀଗଣ ତାଙ୍କୁ କୃଷ୍ଣଙ୍କର ପଦଚିହ୍ନ ଦେଖାଇଦେଲେ । ପଦଚିହ୍ନ ସନ୍ଦର୍ଶନରେ ତାଙ୍କର ମନ କୃଷ୍ଣ-ପ୍ରେମ-ସିନ୍ଧୁରେ ନିମଜ୍ଜିତ ହୋଇଗଲା । ବିରହ ଜ୍ୱାଳାରେ ସେ ଅସ୍ଥିର ହେବାକୁ ଲାଗିଲେ ଏବଂ କୃଷ୍ଣଙ୍କଠାରୁ ମୁହୂର୍ତ୍ତ ମାତ୍ର ବିଚ୍ଛେଦ ସହିବାକୁ ସେ ଅକ୍ଷମ ବୋଲି ଲଳିତାଙ୍କୁ କହି ତାଙ୍କ ସହ ଶୀଘ୍ର ମିଳିତ ହେବାଲାଗି ଆତୁର ନିବେଦନ କଲେ ।

ଏଣିକି ଶ୍ରୀକୃଷ୍ଣ ମଧ୍ୟ ବୃନ୍ଦାବନସ୍ଥ ଏକ କୁଞ୍ଜରେ ବସିଥିବାବେଳେ କୁନ୍ଦବଲ୍ଲୀ ( ରାଧାଙ୍କ ଦୂତୀ ) ଠାରୁ ରାଧାଙ୍କ ସନ୍ଦେଶ ପାଇ ପ୍ରାଣପ୍ରିୟା ଶ୍ରୀରାଧାଙ୍କର ରୂପ, ଶୋଭା ଓ ବିଭିନ୍ନ କଳାକୌଶଳକୁ ସ୍ମରଣ କରି ଶୋକାତୁର ହେଲେ ଏବଂ ତାଙ୍କ ସହ ମିଳିତ ହେବାପାଇଁ ଉଦ୍‌ବିଗ୍ନ ହେଲେ । ଏହି ସମୟରେ ରସମଞ୍ଜରୀ ଉପସ୍ଥିତ ହୋଇ ରାଧାଙ୍କର ବିରହଦଶା ବର୍ଣ୍ଣନା କରନ୍ତେ କୃଷ୍ଣ ଶୀଘ୍ର ଅନଙ୍ଗ କୁଞ୍ଜ ଅଭିମୁଖେ ପ୍ରସ୍ଥାନ କଲେ ।

ବୃନ୍ଦବଲ୍ଲୀ କୃଷ୍ଣଙ୍କଠାରୁ ମିଳନ ସନ୍ଦେଶ ଆଣି ରାଧାଙ୍କ ନିକଟରେ ଉପସ୍ଥିତ ହେବାରୁ ବିରହୋତ୍କଣ୍ଠିତା ରାଧା ଅତ୍ୟନ୍ତ ଆନନ୍ଦିତା ହେଲେ । ତତ୍ପରେ ରସମଞ୍ଜରୀ ରାଧାଙ୍କ ବିରହରେ କୃଷ୍ଣଙ୍କର ବେଦନା ବର୍ଣ୍ଣନା କରି ରାଧାସଙ୍ଗ ଲାଭ କରିବା ଆଶାରେ ସେ ଅନଙ୍ଗ କୁଞ୍ଜରେ ପ୍ରତୀକ୍ଷା କରିଛନ୍ତି ବୋଲି କହିଲି । ଏହା ଶୁଣି ରାଧା ଅତ୍ୟନ୍ତ ଉଦ୍‌ବିଗ୍ନ ଚିତ୍ତରେ କିଂକର୍ତ୍ତବ୍ୟବିମୂଢ଼ା ହୁଅନ୍ତେ ସଖୀ ଲଳିତା ସେହି କମଳନୟନ, ମଧୁରମୂର୍ତ୍ତି ଶ୍ରୀକୃଷ୍ଣଙ୍କଠାରେ କାୟମନୋବାକ୍ୟରେ ସର୍ବସ୍ୱ ସମର୍ପଣ କରିବାକୁ ନାନାବିଧ ଶୃଙ୍ଗାରୋପଦେଶ ପ୍ରଦାନ କରି ମିଳନ କୁଞ୍ଜକୁ ପ୍ରେରଣ କଲେ ଓ ରସମଞ୍ଜରୀ ପୁନର୍ବାର ଶ୍ରୀକୃଷ୍ଣଙ୍କ ନିକଟକୁ ଯାଇ ରାଧାଙ୍କ ଆଗମନ ସନ୍ଦେଶ ଜଣାନ୍ତେ କୃଷ୍ଣ ଅତ୍ୟନ୍ତ ହର୍ଷୋତ୍ଫୁଲ୍ଲ ହୋଇ ରାଧାଭାବ ରସରେ ନିମଗ୍ନ ହେଲେ ।

ରାଧା ସଖୀଗଣଙ୍କ ମେଳରେ କୁଞ୍ଜମଧ୍ୟରେ ପ୍ରବେଶ କଲେ । ସଖୀଗଣ ରାଧାକୃଷ୍ଣଙ୍କର ଯୁଗଳମୂର୍ତ୍ତିର ଚମତ୍କାରିତା ସମ୍ବନ୍ଧରେ ପରସ୍ପର ମଧ୍ୟରେ ଆଲୋଚନା କରୁଥିବାବେଳେ ଅଦୂରରୁ ସୁମନସ ସରୋବର କୂଳରୁ ମୋହନ ବଂଶୀ ସ୍ୱନ ଶୁଣିବାକୁ ପାଇଲେ । ସେହି ବଂଶୀନାଦ କ୍ରମଶଃ ଯେତେ ନିକଟରୁ ନିକଟତର ହେଲା ରାଧାଙ୍କସମେତ ସମସ୍ତ ସଖୀଙ୍କର କାମବିକାର ସେତେ ବୃଦ୍ଧିପ୍ରାପ୍ତ ହେଲା । ତତ୍ପରେ ମିଳନ କୁଞ୍ଜରେ ରାଧା ଉପସ୍ଥିତ ହେଲେ । ଏହା ହିଁ ରାଧାକୃଷ୍ଣଙ୍କ ମିଳନର ପ୍ରକୃଷ୍ଟ ସମୟ ଜାଣି ବୃକ୍ଷଶାଖାରୁ ଶୁକଶାରୀ 'ରାଧା' 'ରାଧା', 'କୃଷ୍ଣ' 'କୃଷ୍ଣ' ନାମୋଚ୍ଚାରଣ କରନ୍ତେ ଉଭୟ ଭାବାବେଶରେ ଆପ୍ଲୁତ ହୋଇଗଲେ । ଉଭୟଙ୍କର ଚାରିଚକ୍ଷୁର ମିଳନ ହେଲା ଓ ରାଧାକୃଷ୍ଣ ପରସ୍ପର ପ୍ରତି ଅତିମାତ୍ରାରେ ଆକୃଷ୍ଟ ହେଲେ । କୃଷ୍ଣଙ୍କର ହୃଦୟ ରାଧା ରସରେ ଦ୍ରବୀଭୂତ ହୋଇ ସାତ୍ତ୍ୱିକ ବିକାର ଜାତ ହେବାରୁ ସେ ଚେତନାଶୂନ୍ୟ ହୋଇଗଲେ । ତାଙ୍କର ହସ୍ତରୁ ପ୍ରିୟ ବଂଶୀଟି ସ୍ଖଳିତ ହୋଇ ଚତୁରା ସଖୀଗଣଙ୍କ ଦ୍ୱାରା ଅପହୃତ ହେଲା । କୃଷ୍ଣ କିଛି ସମୟ ପରେ ଚେତନା ପାଇ ବଂଶୀହରଣ ସମ୍ବନ୍ଧରେ ସମସ୍ତଙ୍କୁ ପରିହାସ ଛଳରେ ପଚାରିବାକୁ ଲାଗିଲେ । ସଖୀ ଓ କୃଷ୍ଣଙ୍କ ମଧ୍ୟରେ ଏହି ଅବସରରେ ବହୁ ହାସ ଓ ଉକ୍ତି ପ୍ରତ୍ୟୁକ୍ତି ହେବା ପରେ ଧନିଷ୍ଠାର ପଣତରୁ ବଂଶୀର ସନ୍ଧାନ ମିଳିଲା । କୃଷ୍ଣ ଅତ୍ୟନ୍ତ ଆନନ୍ଦମନା ହୋଇ ରାଧାଙ୍କ ସହ ମଦନ କୁଞ୍ଜରେ ପ୍ରବେଶ କଲେ ।

ଏଥିଉତ୍ତାରୁ ମଧ୍ୟାହ୍ନ ଅତିକ୍ରାନ୍ତ ହେବାରୁ ଶୁକଶାରୀ ସଙ୍କେତ ଦେଲେ । ତେଣୁ ସଖୀମାନେ ସ୍ନାନାନ୍ତେ ସୂର୍ଯ୍ୟ ପୂଜା ସାରି ଗୃହକୁ ଫେରିଯିବାପାଇଁ ଉତ୍ସୁକ ହେଲେ । ରାଧା ଅତ୍ୟନ୍ତ ବିରସ ମନରେ କୃଷ୍ଣଙ୍କଠାରୁ ବିଚ୍ଛିନ୍ନା ହେଲେ । ଶୃଙ୍ଗାର କ୍ଳେଶରୁ ରାଧାଙ୍କର ସମସ୍ତ ଶରୀର ତଥା ବସନଭୂଷଣାଦି ଶିଥିଳ ହୋଇ ପଡ଼ିଥିଲା । ସଖୀମାନେ ନାନା ପରିହାସ କରି ତାଙ୍କର ବସନଭୂଷଣ ପୁନର୍ବାର ବିମଣ୍ଡିତ କରି ସେବାଯତ୍ନଦ୍ୱାରା ତାଙ୍କୁ ପ୍ରକୃତିସ୍ଥା କରାଇଲେ । ତାହାପରେ ରାଧାକୃଷ୍ଣଙ୍କର ସହଚରୀମାନଙ୍କ ଗହଣରେ ରାଧାକୁଣ୍ଡରେ ଜଳକ୍ରୀଡ଼ା ଆରମ୍ଭ ହେଲା । ସମସ୍ତେ କୃଷ୍ଣଙ୍କର ଜଳକେଳି ରସ ତରଙ୍ଗିଣୀରେ ଅବଗାହନ କରି ପରିତୃପ୍ତ ହୋଇ ସୂର୍ଯ୍ୟ ପୂଜାର ଆୟୋଜନ କଲେ ।

ଏହି ସମୟରେ କୃଷ୍ଣ ଏକ କପଟ ବ୍ରାହ୍ମଣ ବେଶ ଧରି ସେଠାରେ ପହଞ୍ଚି ନାନା ଛଳୋକ୍ତିଦ୍ୱାରା ସେମାନଙ୍କର ମନ ଆନନ୍ଦ କରାଇଲେ ଏବଂ ରାଧା ମଧ୍ୟ କୃଷ୍ଣଙ୍କୁ ହାସ ତଥା ଭାବଭଙ୍ଗୀଦ୍ୱାରା ପରିତୋଷ କରାଇ ଆଳୀମାନଙ୍କ ସହ ସ୍ୱଗୃହକୁ ବାହୁଡ଼ିଗଲେ ।

ଏହା ହିଁ ହେଲା କାବ୍ୟଟିର ଉପଜୀବ୍ୟ କଥାବସ୍ତୁ । ଏହିପରି କ୍ଷୁଦ୍ର ବିଷୟବସ୍ତୁକୁ ନେଇ ଗଜପତି କବି ଯେ ଏତେ ସରସ ଓ ଜୀବନ୍ତ କାବ୍ୟଟିଏ ରଚନା କରିଛନ୍ତି ବାସ୍ତବିକ ଆଶ୍ଚର୍ଯ୍ୟର କଥା । ଶ୍ରୀକୃଷ୍ଣଙ୍କର ଅନନ୍ତଲୀଳା ତଥା ଜୀବନ ଚରିତର ଏକମାତ୍ର ମଧ୍ୟାହ୍ନର କ୍ଷଣିକ ଶୃଙ୍ଗାରଲୀଳା ବର୍ଣ୍ଣିତ ହୋଇଥିବା ଦୃଷ୍ଟିରୁ ଏହାକୁ ଏକ ଖଣ୍ଡକାବ୍ୟରୂପେ ଗଣନା କରିବା ମଧ୍ୟ ଯଥାର୍ଥ ମନେ ହୁଏ ।[୧] କୃଷ୍ଣ କେଳି ରସର ପ୍ରକୃତରେ ଏହା ଏକ ଚଞ୍ଚଳ ତରଙ୍ଗିଣୀ । କାବ୍ୟର ଏତାଦୃଶ ନାମକରଣ ଏଣୁ ସମ୍ପୂର୍ଣ୍ଣ ଯଥାର୍ଥ ( ଯଦ୍ୟପି କାବ୍ୟ ମଧ୍ୟରେ କୌଣସି ସ୍ଥଳରେ କବି ସ୍ୱୟଂ କାବ୍ୟର ନାମ ସମ୍ବନ୍ଧରେ କୌଣସି ଉଲ୍ଲେଖ କରି ନାହାନ୍ତି ) ।

ଉତ୍କଳୀୟ ସାହିତ୍ୟର ମଧ୍ୟଯୁଗରେ ବିକୀର୍ଣ୍ଣ ହୋଇ ପଡ଼ିଥିବା ରାଧାକୃଷ୍ଣ ସମ୍ବନ୍ଧୀୟ ଭାବଧାରାର ଏହା ଏକ ସରସ ଉତ୍ସ । ଅଷ୍ଟାଦଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ରାଧାକୃଷ୍ଣଙ୍କୁ କେନ୍ଦ୍ରକରି ସଙ୍ଗୀତମୟ ସାହିତ୍ୟର ଏକ ଅପୂର୍ବ ଉଦ୍ଭବ ଘଟିଥିଲା । ସେମାନଙ୍କ ମଧ୍ୟରୁ ବିଶେଷତଃ କବିସୂର୍ଯ୍ୟ ବଳଦେବ ରଥ, ଗୋପାଳକୃଷ୍ଣ ତଥା ବନମାଳୀ ଯଥାକ୍ରମେ ଥିଲେ ସଙ୍ଗୀତଜ୍ଞ, ପ୍ରତିଭାଶାଳୀ ତଥା ଭକ୍ତକବି । 'କୃଷ୍ଣ କେଳି ତରଙ୍ଗିଣୀ' ପାଠକଲେ ଜଣାଯାଏ ଯେ ସତେ ଯେପରି ଏହି କବିତ୍ରୟଙ୍କର ତିନିଗୋଟି ବୈଶିଷ୍ଟ୍ୟକୁ ସମାନ ଭାବରେ ଗ୍ରହଣ କରି ଆବିର୍ଭୂତ ହୋଇଥିଲେ ଗଜପତି କବି ପୁରୁଷୋତ୍ତମ ଦେବ । ତାଙ୍କର କୃଷ୍ଣଭକ୍ତି, କବିପ୍ରତିଭା ତଥା ସଙ୍ଗୀତ ଜ୍ଞାନ ଏକାଧାରରେ ଏହି କ୍ଷୁଦ୍ର କାବ୍ୟଟିରୁ ପ୍ରମାଣିତ ହୁଏ । କବିଙ୍କର ଅଳ୍ପଦିନ ପୂର୍ବରୁ ଦୀନକୃଷ୍ଣ, ଧନଞ୍ଜୟ, ଉପେନ୍ଦ୍ରଭଞ୍ଜ ଓ ଲୋକନାଥ ପ୍ରଭୃତି ବିଖ୍ୟାତ କବିଗଣ ସ୍ୱ ସ୍ୱ ଅବଦାନଦ୍ୱାରା ଓଡ଼ିଆ ସାହିତ୍ୟକୁ ଗୌରବୋଜ୍ଜ୍ୱଳ କରି ସାରିଥିଲେ ଏବଂ ବୃନ୍ଦାବତୀ ଦାସୀ, ଭୀମ ଦାସ ପ୍ରଭୃତି ବ୍ରଜପଲ୍ଲୀ ପ୍ରେମଭକ୍ତି ସମ୍ପର୍କୀୟ କୃଷ୍ଣକାବ୍ୟାଦି ରଚନା କରି ଓଡ଼ିଆ ଭକ୍ତି ସାହିତ୍ୟର ଧାରା ଅବିଚ୍ଛିନ୍ନ ରଖିଥିଲେ । ଦୀନକୃଷ୍ଣ, ଉପେନ୍ଦ୍ର, ଅଭିମନ୍ୟୁ ଆଦି କବି

---

୧ । ପ୍ରସିଦ୍ଧ ଆଳଙ୍କାରିକ ବିଶ୍ୱନାଥ କବିରାଜ ଖଣ୍ଡକାବ୍ୟର ପରିଭାଷା ଦେବାକୁ ଯାଇ ଲେଖିଛନ୍ତି— "ଖଣ୍ଡକାବ୍ୟଂ ଭବେତ୍ କାବ୍ୟସ୍ୟୈକଦେଶାନୁସାରି ଚ" ( ସା. ଦ., ଷଷ୍ଠ ପରିଚ୍ଛେଦ—୩୨୯ ) ଅର୍ଥାତ୍ କାବ୍ୟର ଏକ ଦେଶ ବା ଅଂଶକୁ ଅନୁସରଣ କରୁଥିବା ରଚନା 'ଖଣ୍ଡକାବ୍ୟ' ଅଟେ । ଏଥିରେ ଜୀବନର ଏକ ବିଶେଷ ଅନୁପ୍ରାଣିତ ମୁହୂର୍ତ୍ତ ଅଭିବ୍ୟକ୍ତ ହୋଇଥାଏ । ସଂସ୍କୃତ ଭାଷାରେ ମହାକବି କାଳିଦାସ କୃତ 'ମେଘଦୂତ' ଆଦି ଖଣ୍ଡକାବ୍ୟରୂପେ ପରିଚିତ । ଓଡ଼ିଆ ଭାଷାରେ ମଧ୍ୟ ବିଭିନ୍ନ ସମୟରେ କୋଇଲି, ବୋଲି, ପୋଇ ଇତ୍ୟାଦି ଅସଂଖ୍ୟ ଖଣ୍ଡକାବ୍ୟ ରଚିତ ହୋଇଅଛି ।

ରାଧାକୃଷ୍ଣ ପ୍ରେମଲୀଳା ଚରିତକୁ ରୀତିକାବ୍ୟାନ୍ତର୍ଗତ କରି ଆଳଙ୍କାରିକ ଛଟାରେ ଉଦ୍‌ଭାସିତ କରିଥିଲେ । ତେଣୁ ଏ ସମସ୍ତ ପ୍ରଭାବ ଗଜପତି ପୁରୁଷୋତ୍ତମଙ୍କ ଉପରେ ପଡ଼ିଥିବା ସ୍ୱାଭାବିକ । କାବ୍ୟ ରଚନାରେ ସେ ପୂର୍ବୋକ୍ତ ସମସ୍ତ କବିମାନଙ୍କର ସମକକ୍ଷ ହେବାପାଇଁ ଯତ୍ପରୋନାସ୍ତି ଚେଷ୍ଟାକରି ବିବିଧ ଉପମା, ଯମକ, ଅନୁପ୍ରାସାଦି ଅଳଙ୍କାର ବ୍ୟବହାର କରି ରାଧାକୃଷ୍ଣଙ୍କ ମଧ୍ୟାହ୍ନ କ୍ରୀଡ଼ାର ଏକ ଜୀବନ୍ତ ଆଲେଖ୍ୟ ପ୍ରଦାନ କରିଛନ୍ତି । ସମଗ୍ର ଦ୍ୱିତୀୟ ଛାନ୍ଦଟିରେ ସଖୀ ଲଳିତା ମୁଖରେ ବୃନ୍ଦାବନର ବନପ୍ରଦେଶ, ଅନ୍ତଃସଲିଳା ଯମୁନା ନଦୀ ତଥା ଗୋବର୍ଦ୍ଧନ ପର୍ବତାଦିର ମଧୁମୟ ଚିତ୍ର ପ୍ରଦାନ କରିବା ସଙ୍ଗେ ସଙ୍ଗେ ପ୍ରତ୍ୟେକ ପ୍ରାକୃତିକ ଦୃଶ୍ୟାବଳୀରେ ଯେପରି ବ୍ୟକ୍ତିଭାବାରୋପ କରିଛନ୍ତି ତାହା ତାଙ୍କର ଅନୁପମ କବିପ୍ରତିଭା ତଥା ଅଳଙ୍କାର ପ୍ରୟୋଗ ନୈପୁଣ୍ୟର ପ୍ରକୃଷ୍ଟ ପରିଚୟ ।

"ଦେଖ ଏ କଦମ୍ବ     କୁସୁମ କଦମ୍ବ
ସମ୍ବର ପରିଛଡ଼ା ଶର ।
ହେରମ୍ବ ପ୍ରଳମ୍ବ     କରି ଅବଲମ୍ବ
କଲେ କି ମୋଦକ ନିକର ।
ସଙ୍ଗାତ, କି ଏ ମାର କେଳି କନ୍ଦୁକ ।
ଏଥି କ୍ରୀଡ଼ା କରି     ଅଭିନବ କାମ
ଫିଟାଇ ହୃଦୟ ସିନ୍ଦୁକ ॥"
( ୨ୟ ଛାନ୍ଦ, ପଦ ୧୪ )

× × × ×

"ବନ୍ଧୁ ପ୍ରାଣ ଯିନା     ମୋର ପ୍ରାଣର ବଲ୍ଲଭୀ
ଲଭିଲେ ରହିବ ଯିବ ତା ଅଙ୍ଗ ସୁରଭି ।
ସୁରଭି ବୃନ୍ଦ ସଙ୍ଗତେ     ତେଜ ସଖୀଗଣ
ଗଣନା କରଇ ଏକା ପ୍ରିୟା ଆଗମନ ॥"
( ୭ମ ଛାନ୍ଦ, ପଦ ୫ )

ଇତ୍ୟାଦି କବିଙ୍କର ବର୍ଣ୍ଣନା ଚମତ୍କାରିତା ଓ ଅଳଙ୍କାର ପ୍ରୟୋଗର ସ୍ୱଳ୍ପ ଉଦାହରଣ ମାତ୍ର ।

ଏହାଛଡ଼ା କାବ୍ୟଟି ବିଭିନ୍ନ ରାଗରାଗିଣୀ ସମନ୍ୱିତ ହୋଇ ଆମୂଳଚୂଳ କଳାମଞ୍ଜୁଳ ଓ ରସାଳତମ ସଙ୍ଗୀତ ବାହନରେ ଅଧିଷ୍ଠିତ ହୋଇପାରିଛି ଯାହା ପାଠକଲେ କର୍ଣ୍ଣ ଆପ୍ଲୁତ ହେବା ସଙ୍ଗେ ସଙ୍ଗେ ହୃଦୟ କୃଷ୍ଣ ପ୍ରେମରସରେ ଉଲ୍ଲସିତ ଓ ଦ୍ରବୀଭୂତ ହୁଏ । ଦୁଇଟି ପ୍ରଣୟ ମିଳନାତୁର ଆତ୍ମାର ପରସ୍ପର ପ୍ରତି ଆର୍ତ୍ତ ପିପାସା ସଂସାର ପରିବେଶକୁ ଭ୍ରୂକ୍ଷେପ ନ କରି ସେହି ଅଲୌକିକ ଆସ୍ୱାଦସ୍ତର

ପରିସ୍ଥିତିଭିମୁଖୀ ଆକର୍ଷଣ, ଯମୁନାକୂଳସ୍ଥ ମନୋରମ କୁଞ୍ଜବନରେ ଅପୂର୍ବ ମିଳନ ତଥା ପ୍ରଣୟଲୀଳାର ସମସ୍ତ ସୂପରିଚିତ ପ୍ରାକୃତିକ ଘଟଣାଗୁଡ଼ିକ ଅତ୍ୟନ୍ତ ବାସ୍ତବତା ସହ ଉପସ୍ଥାପିତ ହୋଇଅଛି । କାବ୍ୟର ପ୍ରାୟ ଅର୍ଦ୍ଧାଧିକ ଅଂଶ ରାଧାକୃଷ୍ଣଙ୍କର ଏହି ମିଳନାତୁର ମାନସିକାବସ୍ଥାର ବିବିଧ ପ୍ରକାରରେ ପୂର୍ଣ୍ଣ । ଚତୁର୍ଥ ଛାନ୍ଦରେ କବି କୃଷ୍ଣ ମିଳନାତୁର ରାଧିକାଙ୍କ ମୁଖରେ ଶ୍ରୀକୃଷ୍ଣଙ୍କର ପ୍ରତ୍ୟେକ ଅଙ୍ଗ ସୁଷମା ବର୍ଣ୍ଣନା କରି ତାଙ୍କ ଦର୍ଶନରେ ଓ ତାଙ୍କ ଅଙ୍ଗସ୍ପର୍ଶରେ ରାଧାଙ୍କର ଜାତ ହେଉଥିବା ବିଭିନ୍ନ ମାନସିକ ତଥା ଶାରୀରିକ ବିକାର ଅତ୍ୟନ୍ତ ଚିତ୍ତାକର୍ଷକ ରୀତିରେ ବର୍ଣ୍ଣନା କରିଛନ୍ତି । କୃଷ୍ଣ ପ୍ରେମାବେଶରେ ଶ୍ରୀରାଧା ପ୍ରିୟସଖୀ ଲଳିତାଙ୍କ ପାଖରେ ସୁଲଳିତ ଭାଷାରେ ନିଜର କାମାବସ୍ଥା ବର୍ଣ୍ଣନା କରି କହିଛନ୍ତି—

"ସଖୀ ସେ କଳାନିଧି ରୂପ ଦର୍ଶନେ
ସତୀ ଧୃତି କାହିଁ ରହିବ

× × ×

କ୍ଷଣ ମାତ୍ର ହିଁ କୃଷ୍ଣ ସଙ୍ଗ ଭଙ୍ଗ
ହେଲେ କ୍ଷମା ନ କରଇ ଅନଙ୍ଗ ।"

× × ×

"ତଥାପି ହିଁ ନିକଟ ହେଲେ ଶ୍ୟାମ
କି କି ଭାବେ ପ୍ରକଟେ ଚିତ୍ତ କାମ
କୁଚ କଞ୍ଚୁକ ଶତଧା ବିଦାରିତ
ହେଲେ କି ଆଉ ଉଦ୍ୟମ ରେ । ସଙ୍ଗିନି ।"

× × ×

"ସମାଗମରେ ଧୃତି ଭଙ୍ଗ ଉପୁଜି କରିଥାଇ ମୁଁ ଚିତ୍ତ ସ୍ଥିର
କାନ୍ତ ହୋଇଲେ ହେ କାମେ ସଞ୍ଚର
ପାବକ ସଂଯୋଗେ ଜତୁ ପିଣ୍ଡପ୍ରାଏ
ସ୍ମରଣେ ହୃଦୟାନ୍ତରରେ । ସଙ୍ଗିନି ।"

ଅଷ୍ଟମ ଛାନ୍ଦରେ ରାଧାଙ୍କ ଦର୍ଶନରେ ବିରହକାତର ଶ୍ରୀକୃଷ୍ଣଙ୍କର ସାତ୍ତ୍ୱିକ ବିକାରଜ ଚିତ୍ତବିଭ୍ରମ ଓ ହସ୍ତରୁ ବଂଶୀସ୍ଖଳନ, ନବମ ଛାନ୍ଦରେ କୃଷ୍ଣ ଓ ଗୋପୀଙ୍କ ମଧ୍ୟରେ ଚାତୁର୍ଯ୍ୟପୂର୍ଣ୍ଣ କଥୋପକଥନ କାବ୍ୟରେ ଅନ୍ୟତମ ବିଶିଷ୍ଟ ସ୍ଥାନ ଅଧିକାର କରିଅଛି ।

"ଏଥୁ ଅନନ୍ତରେ ଶୁଣ ସୁରସ
କୃଷ୍ଣ ରାଧା ରସେ ହୋଇ ଅବଶ
ଶ୍ରୀକରୁ ମୋହନ ବଂଶୀ ପଡ଼ିଲା
ମନୋଜ ରସରେ ଚିତ୍ତ ଜଡ଼ିଲା
ସେ ଚେତନା ପାଇ
ବୋଇଲେ ସଖୀ ରେ ମୁରଲୀ କାହିଁ ?

ଏତେ ବୋଲନ୍ତୁ ଧରି ଲଳିତା ବାସ
ବୋଲନ୍ତି କରି ମନ୍ଦ ମନ୍ଦ ହାସ
କାହୁଁ ଶିକ୍ଷା କଲ ଏପରି ହାସ
ବଂଶୀ ଗୋପାଇ ମନ୍ଦ ମନ୍ଦ ହସ
ଏତେ ହୋଇ କନା
ମୁରଲୀ ହାଥ ରେ ମୀନ ନୟନା ।।" ( ନବମ ଛାନ୍ଦ, ପଦ—୧/୨ )

× × ×

"କେ ବୋଲେ ସଖି ଏ ନାଗରବର
ମୁରଲୀ ଲୁଚାଏ ବନ ଭିତର
ଆମ୍ଭକୁ କପଟ ବାଦ ଲଗାଇ
ବାସ ଫେଡ଼ିବେ ଯେ ବୋଲିବ ନାହିଁ ।।" ( ନବମ ଛାନ୍ଦ, ପଦ—୫ )

× × ×

"କେ ବୋଲଇ ମୋର ଭାଗ୍ୟ ହାଣିଲା
ବଂଶୀଧର କରୁ ମୁରଲୀ ଗଲା
ନିରନ୍ତର ଧରେ ମୋହର ନାମ
ଶୁଣିଲେ ମନରେ ଉଜ୍ଜଟ କାମ
ଚିତ୍ତ ଛନ୍ନ ଛନ୍ନ
ପାଶୋର ବାସ ବ୍ୟସନ ଅଶନ ।।" ( ନବମ ଛାନ୍ଦ, ପଦ—୯ )

ଏହିପରି କଥୋପକଥନର ବାତାବରଣ ଅତ୍ୟନ୍ତ କୌତୁକପ୍ରଦ ତଥା ରସପୂର୍ଣ୍ଣ । କାବ୍ୟଟି ଅଳଙ୍କାରମଣ୍ଡିତ ହୋଇ ମଧ୍ୟ ରସାସ୍ୱାଦନରେ ଆଦୌ ବ୍ୟାଘାତ ସୃଷ୍ଟି କରୁ ନାହିଁ ।

ଶ୍ରୀକୃଷ୍ଣଙ୍କର ପ୍ରସିଦ୍ଧ ବ୍ରଜବସଲୀଳାର ପ୍ରଧାନ କ୍ଷେତ୍ର ବୃନ୍ଦାବନ । ଏହି ବୃନ୍ଦାବନ ରସସ୍ଥଳୀ ଅଟେ । ୧୬ଶ ଶତାବ୍ଦୀରେ ରାଧାକୃଷ୍ଣଙ୍କର ଲୀଳାବଳୀସବୁ ଆଧାର କରି ରସ ସାଧନାର ସଂପ୍ରଦାୟଗତଃ ବ୍ୟବସ୍ଥିତ ରୂପ ଏହି ବୃନ୍ଦାବନରେ ହିଁ ପ୍ରକଟିତ ହୋଇଅଛି । ସମସ୍ତ କୃଷ୍ଣଭକ୍ତ ସଂପ୍ରଦାୟଙ୍କର ଏହି ବୃନ୍ଦାବନ ହିଁ ପ୍ରମୁଖ ସାଧନାଭୂମି ଅଟେ ଏବଂ ପ୍ରାୟ

ସମସ୍ତ କୃଷ୍ଣଭକ୍ତସାହିତ୍ୟ ଏହି ବୃନ୍ଦାବନ ଉପରେ ହିଁ ଆଧାରିତ । ଆଜିପର୍ଯ୍ୟନ୍ତ ମଧ୍ୟ ଏହି ବୃନ୍ଦାବନର ବାତାବରଣ ଉପାସନା ଏବଂ ସାହିତ୍ୟର ସୌରଭରେ ପରିପୂର୍ଣ୍ଣ ।

ଏହି ବୃନ୍ଦାବନର ଶୋଭା ଅତୀବ ରମଣୀୟ । ଏହାକୁ କୁଞ୍ଜବନ ବୋଲି ମଧ୍ୟ ଶାସ୍ତ୍ରମାନଙ୍କରେ ଉଲ୍ଲେଖ କରାଯାଇଅଛି ।

ଏହି ବୃନ୍ଦାବନର କମନୀୟ ଶୋଭା ଅସଂଖ୍ୟ ଭାରତୀୟ ତଥା ଓଡ଼ିଆ କବିଙ୍କ ଲେଖନୀରେ ମୂର୍ତ୍ତିମନ୍ତ ହୋଇଉଠିଛି । ତେଣୁ "କୃଷ୍ଣ କେଳି ତରଙ୍ଗିଣୀ"ରେ ମଧ୍ୟ ଗଜପତି କବି ଏହି ରମଣୀୟ ପୁରାଣପ୍ରସିଦ୍ଧ ବୃନ୍ଦାବନକୁ ବାଦ୍ ଦେଇ ନାହାନ୍ତି । ସମଗ୍ର କାବ୍ୟଟିର ଉପଜୀବ୍ୟ ବିଷୟବସ୍ତୁ ଶ୍ରୀକୃଷ୍ଣଙ୍କ ମଧ୍ୟାହ୍ନ ଲୀଳା ଓ ତତ୍‌ସଂପୃକ୍ତ ସମସ୍ତ ଘଟଣାବଳୀ ବୃନ୍ଦାବନରେ ହିଁ ସଂଘଟିତ ହୋଇଅଛି । ତେଣୁ କବିଙ୍କ ଲେଖନୀ ବୃନ୍ଦାବନର ଅଲୌକିକ ସୌନ୍ଦର୍ଯ୍ୟ ବର୍ଣ୍ଣନରେ ତତ୍ପର ହୋଇ ଉଠିଛି ଏବଂ ଅଳଙ୍କାର ପ୍ରୟୋଗ ତାହାର ଶୋଭାକୁ ବହୁଗୁଣରେ ବର୍ଦ୍ଧିତ କରିପାରିଛି । ଦ୍ୱିତୀୟ ଛାନ୍ଦର ପ୍ରାରମ୍ଭରେ ସଖୀ ଲଳିତା ଶ୍ରୀରାଧାଙ୍କ ଆଗରେ ବୃନ୍ଦାବନର ବୈଶିଷ୍ଟ୍ୟ ବର୍ଣ୍ଣନା କରି କହିଅଛି—

"ଦେଖ ରେ ନରେନ୍ଦ୍ର ନନ୍ଦନା କରୀନ୍ଦ୍ର-
ଗମନା ବୃନ୍ଦାବନ ଦେଶ
ଲଂଘି ନିଜ କାଳ ସର୍ବଦା ସକଳ
ଋତୁ କଲେ ଏଥି ନିବାସ
ସଙ୍ଗାତ, ଯେହ୍ନେ ଏ ବୃନ୍ଦାର ଆବେଶ ।
ତରୁ ଲତା ଗଣ ନିଜ ନିଜ ଗୁଣ
ଯେହ୍ନେ ନିରନ୍ତରେ ପ୍ରକାଶ ।
ସଖି ଏ ସକଳ ଭବନ ଭବନ
ଭୁବନ ରୂପେ ମହୀତଳେ,
ଏହାର ଭୁବନେ ଭୁବନେ ଭବନ
ଭବନ ପାଇ ତପ ଫଳେ ।
ସଙ୍ଗାତ, ପ୍ରକଟ ସୁରଭି ସୁରଭି
ସୁରଭି ସୁରଭି ରସରେ ପ୍ରକଟ
ସହଜରେ ନାହିଁ ସୁରଭି ।"

ଏହିପରି ଭାବରେ ଶବ୍ଦ ଯୋଜନାରେ ଶ୍ଳେଷ ବୈଚିତ୍ର୍ୟ ପ୍ରଦାନ କରି ଯମକ, ଅନୁପ୍ରାସାଦି ଅଳଙ୍କାରମଣ୍ଡିତ କରି ମନୋହାରିଣୀ ଭାଷା ଓ ଭାବ ମାଧ୍ୟମରେ ସେ ବୃନ୍ଦାବନର ବୃକ୍ଷ, ପୁଷ୍ପ, ଲତାଦି ପ୍ରତ୍ୟେକ ପ୍ରାକୃତିକ ଦୃଶ୍ୟ ବର୍ଣ୍ଣନା କରିବା ସଙ୍ଗେ ସଙ୍ଗେ ସ୍ୱଚ୍ଛସଲିଳା ଯମୁନା ନଦୀର ମଧ୍ୟ ବର୍ଣ୍ଣନା କରିବାରେ ତାଙ୍କର ଚମତ୍କାର କଳ୍ପନା-ବିଳାସ ଓ ଅସାଧାରଣ କବିତ୍ୱ ଶକ୍ତିର ପୂର୍ଣ୍ଣ ପରିଚୟ ପ୍ରଦାନ କରିଛନ୍ତି । କବି

ଯମୁନାର ଜଳଧାରାର ଗତିପଥର କୁଟିଳତା ବର୍ଣ୍ଣନା କରିବା ଛଳରେ ଯମୁନାକୁ ଏକ ରସବନ୍ତୀ, ବ୍ୟଙ୍ଗଭୂଷଣୀ ନାୟିକାରୂପେ ଚିତ୍ରିତ କରିଛନ୍ତି—

"ଦେଖ ରେ ସଙ୍ଗିନୀ କୃତାନ୍ତ ଭଗିନୀ
ତରଙ୍ଗ ରଙ୍ଗିଣୀ ଯମୁନା
ପ୍ରବାହ ଛଳେ କୁଟିଳ ଗତି କରେ
କରେ ଶ୍ୟାମା ଶ୍ୟାମ କାମନା
ସଙ୍ଗାତ, ନର୍ମଳ ରସବନ୍ତୀ ହୋଇ
ବାମା ଗୁଣ ଯେନ ସାଗର ନାଗରେ
କୁଟିଳ ଗତି ନ ଛାଡ଼ଇ ।
× × ×
ସଖୀ ଏ ବ୍ୟଭୂଷା ନାଶ୍ଚି ପରସ୍ତେ
ଅରତେ ହେଉଛି ଯମୁନା
ଉଭୟ କୂଳ ଅନୁରୋଧ ଛାଡ଼ି ଯେ
ବିଟପୀ ଗଣେ ସଙ୍ଗମନା,
ସଙ୍ଗାତ, ଅତି ରସିକା ରସବନ୍ତୀ
ପୁନ୍ନାଗ ଧବ ନକଟେ ଥାଇ କଳ୍ପ
ସାଗର ନାଗରେ ପୀରତି ।"

ପୁଣି କବିଙ୍କ ଦୃଷ୍ଟିରେ ଯମୁନା କେଳିକଳାମଣ୍ଡିତା ନାୟିକା ଯାହାର ପୁଳିନସ୍ଥ ଶୈବାଳସମୂହ କେଶ, ପ୍ରସ୍ଫୁଟିତ ପଦ୍ମଫୁଲ ବଦନ, ଚକ୍ରବାକଦ୍ୱୟ ଉରଜରୂପେ ଶୋଭା ପାଉଅଛି । କେଉଁଠି ଯମୁନା ଅବନୀ ବନିତାର କୁଟିଳ କୁନ୍ତଳରୂପେ ପ୍ରଶଂସିତା ହୋଇଅଛି ତ କେଉଁଠି କବି ତାକୁ କମଳା, ସାବିତ୍ରୀ, ଗିରିଜା ଇତ୍ୟାଦି ବିଭିନ୍ନ ରୂପରେ ଚିତ୍ରିତ କରିଛନ୍ତି । ଏହିପରି ବିଭିନ୍ନ ଉପମା ପ୍ରୟୋଗ ଓ ଭାଷାବିନ୍ୟାସ ମାଧ୍ୟମରେ କବି ଯମୁନା ତଥା ବ୍ୟାସ କନ୍ଦର ଗିରି ଗୋବର୍ଦ୍ଧନ, ବୃନ୍ଦାବନସ୍ଥ କଦମ୍ବ, ଚମ୍ପକ, କେତକୀ, ନାଗେଶ୍ୱର, ରସାଳ, କିଂଶୁକ, ମାଧବୀ, କର୍ଣ୍ଣିକାର, ତମାଳ, କୁନ୍ଦ, ବକୁଳ ଆଦି ଫଳପୁଷ୍ପଶୋଭିତ ପ୍ରତ୍ୟେକ ବୃକ୍ଷଲତାରେ ବିବିଧ ବ୍ୟକ୍ତିତ୍ୱାରୋପ କରି ପ୍ରାଚୀନ ସଂସ୍କୃତ ଏବଂ ମଧ୍ୟକାଳୀନ ବିଶିଷ୍ଟ ଆଳଙ୍କାରିକ ଓଡ଼ିଆ କବିମାନଙ୍କର ସମତୁଲ ହୋଇପାରିଛନ୍ତି କହିଲେ ଅତ୍ୟୁକ୍ତି ହେବ ନାହିଁ । କୃଷ୍ଣଙ୍କର ଅନନ୍ତଲୀଳା ସହ ଘନିଷ୍ଠ ଭାବରେ ସମ୍ପୃକ୍ତ ଥିବା ହେତୁ କବି ବୃନ୍ଦାବନର ଚତୁର୍ଦ୍ଦିଗରେ କୃଷ୍ଣଙ୍କର ରୂପଲାବଣ୍ୟର ପ୍ରତିଫଳନ ଅନୁଭବ କରିଛନ୍ତି ଏବଂ ତାହାର ଫଳପୁଷ୍ପପରିପୂର୍ଣ୍ଣ ବୃକ୍ଷଲତା ମଧ୍ୟ ଶ୍ରୀକୃଷ୍ଣଙ୍କ ପ୍ରତି ଯେ ଅନୁରକ୍ତା ଏବଂ ତାଙ୍କ ଆଗମନାପେକ୍ଷାରେ ଉତ୍କଣ୍ଠିତା ହୋଇ ରାଧାକୃଷ୍ଣ କେଳି ସମ୍ପାଦନରେ ସଖାସଖୀ ଭାବରେ କାର୍ଯ୍ୟ କରୁଛନ୍ତି, ଏହା ସାବଲୀଳ ଭାଷାରେ, ବକ୍ରୋକ୍ତି ମାଧ୍ୟମରେ କବି ଲଳିତା ମୁଖରେ ବର୍ଣ୍ଣନା କରିଛନ୍ତି--

"ସଖି ଏ ମାଧବ ଆଗମନ୍ତୁ ଆଗ
ପ୍ରଫୁଲ୍ଲ ହୋଇଛୁ ମାଧବୀ
ସଙ୍ଗମେ ବାସ ଦୂରତର ପ୍ରକାଶ
ଏଣୁ ଏ କାମର ବାନ୍ଧବୀ

× × × •

ଦେଖ ଏ ରସାଳ ଶାଳ ପ୍ରିୟ ଶାଳ
ତାଳ ତମାଳ ଦଳ ଜାଳ
ସବଳ · ସୁବଳ ସକଳ ଗୋପାଳ
ଗୋପାଳ କେଳି ସୁଖ ମୂଳ ।
ସଙ୍ଗାତ, ଫଳ ଦଳ ତଳ ବଳକଳ
ଉଚିତ ଉପଯୋଗରୁ କୃଷ୍ଣ ଚିତ୍ତ
ହରନ୍ତି ନିତ୍ୟ କେଳି ନାଳ ।"

ଏପୂରେ ଭୂଷିପୁ ଛନ୍ଦରେ ବୃନ୍ଦାବନର ବିଭିନ୍ନ ସ୍ଥାନର ଶୋଭାକୁ କବି ବସନ୍ତ, ଗ୍ରୀଷ୍ମ, ବର୍ଷା, ଶରତ ଓ ଶିଶିରାଦି ବିଭିନ୍ନ ଋତୁର ଅପାରଶୋଭା ସୌନ୍ଦର୍ଯ୍ୟ ବିଭବ ସହ ତୁଳନା କରି ସବୁ ସମୟରେ ମନୋମୁଗ୍ଧକର ଶୈଳୀରେ ପରିବେଷଣ କରିଛନ୍ତି । ରାଧାଙ୍କ ସହ ସଖୀଗଣ କୃଷ୍ଣାଭିମୁଖରେ ଅତ୍ୟନ୍ତ ଆନନ୍ଦୋଲ୍ଲାସରେ ଅଗ୍ରସର ହେଉଥିବା-ବେଳେ ବୃନ୍ଦାବନର ବିଭିନ୍ନ ସ୍ଥାନରେ ଭିନ୍ନ ଭିନ୍ନ ଋତୁର ପ୍ରଭାବ ଅନୁଭବ କରି କହିଛନ୍ତି—

"ରଜନୀକର ଆଶାରେ ଲୁଚିଲା
ଦରିଦ୍ର ବରଷ ତାପ,
ରଜନୀକର ଆଶାରେ ଲୁଚିଲା
ଦରିଦ୍ର ବର ସନ୍ତାପ ।
ଅସ୍ତୁଟ କମଳା- କର କମଳରେ
ଅନନ୍ତ ଅଙ୍କରେ ବଧି,
ଅସ୍ତୁଟ କମଳା କର କମଳରେ
ଅନନ୍ତ ଅଙ୍କରେ ବଧି ।

× × × ×

କୃଷ୍ଣ ଘନ ରସ ପ୍ରସର ପ୍ରକାଶ
ସୁରଭି ଭୁବନ ସ୍ଥଳ,
କୃଷ୍ଣ ଘନ ରସ ପ୍ରସର ପ୍ରକାଶ
ସୁରଭି ଭୁବନ ସ୍ଥଳ ।

× × × ×

( ଅଣବରଣ )

ପଦେ ପଦକେ ବନ ଶୋଭା ଦେଖନ୍ତେ
ମିଳଲେ ଆନ ପ୍ରଦେଶେ,
ଶରଦା ମୋଦ ନାମ ପଦ୍ମି ଗୋବନ୍ଦ
ରାସ କେଳ କଲେ ରସେ ।
ବୃନ୍ଦାବନରେ ପ୍ରକଟ କଲ ସଖୀ
କୁମୁଦ କୁମୁଦ କର ।
ବୃନ୍ଦାବନରେ ପ୍ରକଟ କଲ ସଖୀ
କୁମୁଦକୁ ମୁଦକର ।''

ଏହିପରି ବୃନ୍ଦାବନସ୍ଥ ପ୍ରତ୍ୟେକ ବୃକ୍ଷଲତା, ବନ, ଉପବନ, କୁଞ୍ଜ, ନଦୀ, ପର୍ବତ ଇତ୍ୟାଦି କବିଙ୍କର ବଳିଷ୍ଠ ଲେଖମାରେ ସଜୀବ ଓ ମୂର୍ତ୍ତିବନ୍ତ ହୋଇ ପରମ ଶୋଭାର ଆକର ହେବା ସଙ୍ଗେ ସଙ୍ଗେ ସଜୀବ ପ୍ରକୃତିର ବର୍ଣ୍ଣନାରେ ମାନବିକ ଚିତ୍ତବୃତ୍ତିର ପ୍ରକାଶ ମନରେ ପରମ ଆନନ୍ଦ ଜାତ କରୁଅଛି ।

କାବ୍ୟଟିର ଛନ୍ଦେ ଛନ୍ଦେ ବୈଷ୍ଣବୀୟ କୃଷ୍ଣଭକ୍ତିଭାବ ପରିପୂର୍ଣ୍ଣ ହୋଇଅଛି । ବୈଷ୍ଣବ ସମ୍ପ୍ରଦାୟର ଗୋପୀଗଣ, ସଖୀ ଏବଂ ମଞ୍ଜରୀ ଦୁଇ ପ୍ରମୁଖ ଭାବରେ ବିଭକ୍ତ । ଯେଉଁ ଗୋପୀଗଣ ଶ୍ରୀରାଧାଙ୍କର ସମକକ୍ଷାଶ୍ରୟୀ ସେବାଦ୍ୱାରା ଶ୍ରୀକୃଷ୍ଣଙ୍କର ପ୍ରୀତିବିଧାନ କରନ୍ତି ତାହାଙ୍କୁ ସଖୀ କୁହାଯାଏ । ଲଳିତା ବିଶାଖାଦି ଏହି ଶ୍ରେଣୀର ଅନ୍ତର୍ଗତା । ଏମାନଙ୍କୁ ସ୍ୱରୂପଶକ୍ତିରୂପେ ସ୍ୱୀକାର କରାଯାଇଅଛି । ଯେଉଁମାନେ ରାଧାଗୋବିନ୍ଦଙ୍କର ମିଳନ ଏବଂ ସେବାର ଆନୁକୂଲ୍ୟ ସଂପାଦନ କରିବାକୁ ହିଁ ନିଜର କର୍ତ୍ତବ୍ୟ ବୋଲି ମନେକରନ୍ତି ସେମାନେ ମଞ୍ଜରୀରୂପେ ପରିଚିତା—ରୂପମଞ୍ଜରୀ, ଅଙ୍ଗମଞ୍ଜରୀ ପ୍ରଭୃତି । ଏମାନେ ଶ୍ରୀରାଧାଙ୍କର ଅନ୍ତରଙ୍ଗ ସେବାର ଅଧିକାରିଣୀ । କିନ୍ତୁ ସାଧାରଣ ଭାବରେ ଉଭୟଙ୍କୁ ସଖୀ ହିଁ କୁହାଯାଏ କାରଣ ଲୀଳା ବିସ୍ତାର ସାଧନ ପାଇଁ ଉଭୟ ଗୋପୀଙ୍କର ଆବଶ୍ୟକତା ଅନିବାର୍ଯ୍ୟ । ଏହି ବୈଷ୍ଣବୀୟ କୃଷ୍ଣଭକ୍ତି ଧାରାର ସଖୀଭାବ କବିଙ୍କର ଲେଖମାରେ ପରିସ୍ଫୁଟ ହୋଇ ଉଠିଛି । ଲଳିତା, ବିଶାଖା, ଧନିଷ୍ଠା, ରୂପମଞ୍ଜରୀ ଆଦି ସଖୀ ଓ ମଞ୍ଜରୀଗଣ ସର୍ବତ୍ୟାଗୀ ହୋଇ ରାଧାକୃଷ୍ଣ ମିଳନଭାବନାରେ ମନକୁ ନିରତ ନିୟୋଜିତ କରି ରାଧାକୃଷ୍ଣ ଯୁଗଳ ସେବାଜନିତ ବିମଳାନନ୍ଦ ଉପଭୋଗ କରିବା ଜୀବନର ଚରମ ଲକ୍ଷ୍ୟ ହିସାବରେ ଗ୍ରହଣ କରିଛନ୍ତି । ଏହାଛଡ଼ା କବିଙ୍କର ପରମ କୃଷ୍ଣଭକ୍ତି କାବ୍ୟରେ ସର୍ବତ୍ର ପରିଦୃଷ୍ଟ ହୁଏ । ଭଗବାନ ଶ୍ରୀକୃଷ୍ଣ ହିଁ ଅଟନ୍ତି ବ୍ରହ୍ମତ୍ତ୍ୱର ପୂର୍ଣ୍ଣ ବିକଶିତ ରୂପ । ତାଙ୍କର ଲୀଳା କଥା ରସ ନିଷେବଣ ବ୍ୟତିରେକେ ସଂସାର ସିନ୍ଧୁକୁ ତରିବା ସମ୍ଭବ ନୁହେଁ । ତାହା ହିଁ ଧ୍ୟାନକରି କବି ଏହି କାବ୍ୟଟିକୁ ରଚନା କରିଛନ୍ତି । ସେଥିପାଇଁ କବି କାବ୍ୟର ଶେଷରେ କହିଛନ୍ତି—

''ରାଧାକୃଷ୍ଣ ଭାବ
ମନେକରି ଭବାର୍ଣ୍ଣବ ନାବ
ଭଣିଲେ ଅନଙ୍ଗଭୀମ ଦେବ ।''

ପ୍ରଥମ ଛାନ୍ଦଟିକୁ ମଙ୍ଗଳାଚରଣ ଛାନ୍ଦରୂପେ ବର୍ଣ୍ଣନା କରି କବି "କୃଷ୍ଣସ୍ତୁ ଭଗବାନ ସ୍ୱୟମ୍" ଭାଗବତର ଏହି ବାଣୀ ଅନୁସରଣରେ କୃଷ୍ଣଙ୍କର ଦଶ ଅବତାର ବର୍ଣ୍ଣନାକରି ପରଂବ୍ରହ୍ମ ଓ ଅନନ୍ତ ଶକ୍ତିଶାଳୀରୂପେ ଚିହ୍ନିତ କରିଛନ୍ତି । ତହିଁ ସଙ୍ଗେ ସଙ୍ଗେ ମଧ୍ୟ କବି ଗୋପପୁରର ବୃନ୍ଦାବନକୁ ଶ୍ରୀକୃଷ୍ଣଙ୍କ ଲୀଳାସ୍ଥଳୀରୂପେ ବର୍ଣ୍ଣନା ନ କରି ନିତ୍ୟସ୍ଥଳୀର ବୃନ୍ଦାବନ ଧାମକୁ ତାଙ୍କର ବିହାରସ୍ଥଳୀରୂପେ ଲକ୍ଷଣ କରିଛନ୍ତି—

"କଂସ ଧ୍ୱଂସନରୁ ମଥୁରା ଉଶ୍ୱାସ କରି,
ନିତ୍ୟ ବୃନ୍ଦାବନେ ନିତ୍ୟ ଲୀଳା ବିହାରି ।"

କବି ପୁରୁଷୋତ୍ତମ ସେହି ନିତ୍ୟସ୍ଥଳବିହାରୀ ଶ୍ରୀକୃଷ୍ଣଙ୍କର ଚରଣାରବିନ୍ଦରେ ନିଜକୁ ସମର୍ପଣ କରି ସମସ୍ତ ଛାନ୍ଦର ଶେଷରେ ଆରାଧ୍ୟ ରାଧାକୃଷ୍ଣଙ୍କୁ ହିଁ ସ୍ମରଣ କରିଛନ୍ତି—

"ସେ ରାଧାକୃଷ୍ଣ ଚରଣ ପଙ୍କଜେ ନତି,
ପୁରୁଷୋତ୍ତମ ଅନଙ୍ଗଭୀମ ନୃପତି ।"

( ୧ମ ଛାନ୍ଦ, ପଦ—୪୧ )

× × ×

"ସେ ଭାନୁ ନନ୍ଦିନୀ ସେ ନନ୍ଦ ନନ୍ଦନ
ପାଦ ଧ୍ୟାନ କରି ଭଣେ ନୃପ ହରି"

( ୨ୟ ଛାନ୍ଦ, ଶେଷ ପଦ )

× × ×

"ରାଧାକୃଷ୍ଣ ଭାବ କରି ଭବ ନାବ
ଭଣିଲେ ଏ ରସ ସାର ରେ, ସଙ୍ଗିନୀ"

( ୪ର୍ଥ ଛାନ୍ଦ, ପଦ—୨୯ )

× × ×

"ନନ୍ଦ ନନ୍ଦନ ବୃଷଭାନୁ ନନ୍ଦିନୀ
ପଦ ପଙ୍କଜ ରଜ ମସ୍ତକେ ଘେନି ରେ
ମନେ ସଞ୍ଚାରି ସ୍ମରି ଚରଣ ଧ୍ୟାନ
ଭଣିଲେ ନୃପବର ପୁରୁଷୋତ୍ତମ ରେ ।"

( ୫ମ ଛାନ୍ଦ, ପଦ—୪୨ )

ଏହିପରି ଭାବରେ କାବ୍ୟଟି କବି ପୁରୁଷୋତ୍ତମ ଅନଙ୍ଗଭୀମ ଦେବଙ୍କର ଶ୍ରୀକୃଷ୍ଣଙ୍କ ପ୍ରତି ଅନନ୍ୟ ଭକ୍ତିଭାବର ସ୍ପଷ୍ଟ ସୂଚନା ଦେବା ସଙ୍ଗେ ସଙ୍ଗେ ଉତ୍କୃଷ୍ଟ କବିପ୍ରତିଭା ତଥା ପାଣ୍ଡିତ୍ୟର ଚରମ ନିଦର୍ଶନ ।

( ଏକତିରିଶ )

'କୃଷ୍ଣ କେଳି ତରଙ୍ଗିଣୀ' ବ୍ୟତୀତ କବିଙ୍କର ଅନ୍ୟ କୃତିର ସନ୍ଧାନ ଅଦ୍ୟାବଧି ମିଳି ନାହିଁ । ଏହି କାବ୍ୟଟିର ସମ୍ପାଦନା ରାଜ୍ୟ ସଂଗ୍ରହାଳୟରେ ଥିବା ଏକମାତ୍ର କାଗଜ ପାଣ୍ଡୁଲିପି ( Cat. No. Or. Ms/67 )ର ଅବଲମ୍ବନରେ ହୋଇଅଛି । ଏହି ପାଣ୍ଡୁଲିପିରେ ନକଲକାରଙ୍କ ନାମ କିମ୍ବା ସମୟ ସମ୍ବନ୍ଧରେ କୌଣସି ଉଲ୍ଲେଖ ନାହିଁ । ନକଲକାରଙ୍କ ତ୍ରୁଟିଯୋଗୁଁ କାବ୍ୟର କେତେକ ସ୍ଥଳରେ ପାଠ ଅସମ୍ପୂର୍ଣ୍ଣ ଏବଂ ଅସଙ୍ଗତ ମନେ ହେଉଥିଲେ ମଧ୍ୟ ଅନ୍ୟ ପ୍ରତିଲିପି ଅଭାବରୁ ତାହା ଅବିକୃତ ରଖାଯାଇଅଛି ।

ଶ୍ରୀମତୀ ପ୍ରମିଳା ମିଶ୍ର

ତା ୨ । ୧୧ । ୭୩

———

# ସୂଚୀପତ୍ର

# କୃଷ୍ଣ କେଳି ତରଙ୍ଗିଣୀ[1]

## ପ୍ରଥମ ଛାନ୍ଦ

( ଶ୍ରୀ ରାଧାକୃଷ୍ଣାଭ୍ୟାଂ ନମଃ )

—ସଙ୍ଗମଢଆର ବାଣୀ—

ଗୋପାଳବଲ୍ଲଭ ପ୍ରଭୁ ଗୋପାଳଧର ।
ଗୋପାଳୀ ନାୟକ ହୋଇ ଗୋପାଳୀବର ॥ ୧ ॥

ସୁରକୁଳ କମଳ ତପନ ବିଭୂତି ।
ସୁରକୁଳ ନନ୍ଦମ୍ନା କୁଳରେ ପିରତି ॥ ୨ ॥

କାମପାଳ ଅବରଜ ବରଜପାଳ ।
କାମିମ୍ନା କାମଦ ଯାର ମନୋଜ ବାଳ ॥ ୩ ॥

ଝଷ କମଠ କୋଳାଦ୍ଧ ଶରୀର ବହ୍ନି ।
ଧରଅଛୁ ଧରାଧର ସନ୍ତତ ମହୀ[2] ॥ ୪ ॥

ଭକ୍ତ[3] ଛଳେ ଅବତାର ନର କେଶରୀ ।
ଆଦି ସୁର ପର ଉର ନଖରେ ବିଦାରି ॥ ୫ ॥

ଖର୍ବ ଧର ସୁର ବର ମୂରତି ଧରି ।
ବରେ ବଳ ଛଳ ସୁରବର ଉଦ୍ଧାରି ॥ ୬ ॥

ଯମଦଗ୍ନି ତରଣି ଅନଳ ହେ ରାମ ।
ସହସ୍ର ବାହୁ ନାଶନ ଷତ୍ରିୟ ଧାମ ॥ ୭ ॥

ଦଶରଥ ନନ୍ଦନ ଦଶାସ୍ୟ ନିହନ୍ତା ।
ରାମନାମ ଶ୍ରୀବଳେକ ବୃଜନହନ୍ତା ॥ ୮ ॥

---

୧. ତରଙ୍ଗିଣି ( ପୋଥି ପାଠ )
୨. ମହୀ ( ,, )
୩. ଭୃତ୍ୟ ( ,, )

ବଳରାମ ରୂପି ହଳ ମୁଷଳଧାରୀ ।
ଅଶେଷ ବ୍ରହ୍ମାଣ୍ଡ ଏକ କୁଣ୍ଡଳକାରୀ ॥ ୯ ॥

ବେଦପଥ ଦୂଷଣ କାରଣରେ ବୁଧ ।
ପାଷାଣ୍ଡ ଦୀକ୍ଷାରେ[୧] କଲ ଅସୁର ବଧ ॥ ୧୦ ॥

ମହାଘୋର କଳି ଅନ୍ତେ ହୋଇ କଳଙ୍କି ।
ମ୍ଳେଚ୍ଛ ନିବାରଣେ[୨] ଅନ୍ତ କଲ କଳଙ୍କି ॥ ୧୧ ॥

ପୟୋଧର ଧରାଧର ଅଧରେ ଧରି ।
ସ୍ତନ୍ୟପାନେ ନାଶିଲ ପୂତନା ଅସୁରୀ ॥ ୧୨ ॥

ଉଠିଆରି କାଳେ ଶୋଇ[୩] ଶକଟତଳେ ।
ଶକଟାସୁର ନାଶିଲ ପଦ କମଳେ ॥ ୧୩ ॥

ବାଳକାଳେ ଶୂନ୍ୟେ ଗଳେ ଚୃପି ଧଇଲ ।
ପାଳଟି ପକାଇ ଶିଳେ ଚୁଣା ମାଇଲ ॥ ୧୪ ॥

ବତ୍ସାସୁର ବତ୍ସାରୂପ କପଟ କରି ।
ଧରିଥିଲ ଧରି ପ୍ରାଣ ହରିଲ ହରି ॥ ୧୫ ॥

ଅସୁର କାସାର ଚର ବକ ରୂପରେ ।
ଗିଳନ୍ତେ ଗୋପାଳ ଚଞ୍ଚୁ ଚିରିଲ କରେ ॥ ୧୬ ॥

ବିଷବଳ କାଳୀୟ କାଳିନ୍ଦୀ ଜଳରେ ।
ଫଣାମଣି ଚୂର୍ଣ୍ଣିକଲ ନୃତ୍ୟ ଛଳରେ ॥ ୧୭ ॥

ବନ ଦାବ ଅବହେଳେ ଗିଳିଲ ହରି ।
ତାରିଲ ଗୋକୁଳ ଜନ ସଙ୍କଟ ହାରି ॥ ୧୮ ॥

ଅଘାସୁର ଶିର ଫୋଡ଼ି ବତ୍ସ ଗୋପାଳ ।
ଗର୍ଭରୁ ବାହାର କଲ ହେ ଆଦିମୂଳ ॥ ୧୯ ॥

ବୃଷଭ ଅସୁର କର ଚରଣେ ନାଶି ।
ଅଭୟ କଲ ସକଳ ଗୋକୁଳ ବାସୀ ॥ ୨୦ ॥

ହୃଷୀକେଶ[୪] କେଶବ ହେ କେଶୀ ବିନାଶି ।
ଘେନଗଲେ ମଧୁପୁର ଅକ୍ରୂର ଆସି ॥ ୨୧ ॥

---

୧. ଦକ୍ଷା ( ପୋଥି ପାଠ )
୨. ମ୍ଳେଚ୍ଛଣ ସଙ୍ଗେ ( ,, )
୩. ସୋଇ ( ,, )
୪. ହୃଷିକେଶ ( ,, )

କଂସ ଧନୁ ଗୃହେ ପଶି ଧନୁ ଭାଙ୍ଗିଲ ।
କୁବଳୟା ଗଜ ସଙ୍ଗେ ମଲ୍ଲ ମାଇଲ ॥ ୨୨ ॥

କଂସ ଧ୍ୱଂସନରୁ ମଥୁ ଉଲ୍ଲାସ କରି ।
ନିତ୍ୟ ବୃନ୍ଦାବନେ ନିତ୍ୟ ଲୀଳା ବିହାରୀ ॥ ୨୩ ॥

ଦ୍ୱାରବତୀ[1] ପୁରେ ଭୋଗ ମହା ବିଭୂତି ।
ପୂର୍ଣ୍ଣ ପୂର୍ଣ୍ଣରେ ପୂର୍ଣ୍ଣତର ମୂରତି ॥ ୨୪ ॥

କରିବ ଶ୍ରୀ ବୃନ୍ଦାବନ ଲୀଳା ବର୍ଣ୍ଣନା ।
ସୁଧା ସିନ୍ଧୁ ମଧୁ ଯେହ୍ନେ[2] ଅମୀୟ କଣା ॥ ୨୫ ॥

ଅନନ୍ତ ଲୀଳା ଗୃତୁସ ଅନନ୍ତ ଯନ୍ତ୍ରଂ ।
ବୁଦ୍ଧି ଅନୁରୂପେ କନ୍ତୁ କହିବ ତନ୍ତ୍ରଂ ॥ ୨୬ ॥

ମଧ୍ୟାହ୍ନ ଲୀଳା ଗୃତୁସ ଲବ ବର୍ଣ୍ଣନା ।
କରିବ ମୋହର ବୁଦ୍ଧି ଅଳପ[3] ସିନା ॥ ୨୭ ॥

ନାନା ରସ ଭୋଜନ ପ୍ରଭାତେ ରନ୍ଧନ ।
କୃଷ୍ଣଙ୍କୁ ଭୁଞ୍ଜାଇ ରାଧା ଗଲେ ସଦନ ॥ ୨୮ ॥

ବୃନ୍ଦାବନେ ବତ୍ସବୃନ୍ଦ ଘେନି ଗୋବିନ୍ଦ ।
ପ୍ରବେଶ ନନ୍ଦନନ୍ଦନ ଆନନ୍ଦ କନ୍ଦ ॥ ୨୯ ॥

ବୃଷଭାନୁ ସୁତା ମନ ଘେନି ସେ ଗଲେ ।
ଏଣୁ ରାଧା ବୃନ୍ଦାବନେ ଉତ୍ସୁକ ହେଲେ ॥ ୩୦ ॥

ସୂର୍ଯ୍ୟ[4] ପୂଜା ଛଳେ ( ସେହୁ ) କହି ଗୁରୁଙ୍କୁ ।
ସଖୀଗଣ ଘେନିଗଲେ ବୃନ୍ଦାବନକୁ ॥ ୩୧ ॥

ଲଳିତା ବିଶାଖା ଚିତ୍ରା ଚମ୍ପକଲତା ।
ତୁଙ୍ଗ ବିଦ୍ୟା ଇନ୍ଦୁଲେଖା ସଖୀ ସହିତା ॥ ୩୨ ॥

ରଙ୍ଗଦେବୀ ସୁଦେବୀ ଏ ଅଷ୍ଟ ସଙ୍ଗିନୀ ।
ଆଉର ମଞ୍ଜରୀ ଗଣ ସଙ୍ଗରେ ଘେନି ॥ ୩୩ ॥

ଲବଙ୍ଗମଞ୍ଜରୀ ରୂପମଞ୍ଜରୀ ବେନି ।
ରତିମଞ୍ଜରୀ ସେ ଗୁଣମଞ୍ଜରୀ ପୁଣି ॥ ୩୪ ॥

---

୧. ଦ୍ୱାରବତୀ ( ପୋଥି ପାଠ )
୨. ଜେନ୍ତେ ( „ )
୩. ମଷ ( „ )
୪. ସୂର୍ଯି ( „ )

ରସମଞ୍ଜରୀ ବିଳାସମଞ୍ଜରୀ ଯେନ ।
ଏ ଷଷ୍ଠ ମଞ୍ଜରୀ ସଙ୍ଗେ ବନ୍ଧୁ ସଜନୀ ॥ ୩୫ ॥

ପ୍ରିୟ ସଖୀଗଣ ଚେଟିଗଣ ସହିତେ ।
ନାନା ଉପଚାର ଯେନଗଲେ ଭୂଷିତେ ॥ ୩୬ ॥

ଶ୍ରୀକରେ ଗୁନ୍ଥି ଶ କୁନ୍ଦ କୁଟ୍ମଳ[1] ମାଳ ।
ଦ୍ରବ୍ୟ ଚକ୍ର କର୍ପୂର ବଟିକା ତାମ୍ବୁଳ ॥ ୩୭ ॥

କୁନ୍ଦଲତା କରେ ଦେଇ କହି ସଙ୍କେତ ।
ପେଷିଲେ[2] କୃଷ୍ଣ ନିକଟେ କରି ଗୁପତ ॥ ୩୮ ॥

କରୀନ୍ଦ୍ର[3] ଗମନା ପଦ୍ମପାଦେ ଗମନ ।
କରିବାରୁ କଲେ ବୃନ୍ଦାବନ ମଣ୍ଡନ ॥ ୩୯ ॥

ସହଚରୀ[4]ମାନେ କଉତୁକେ ଆବେଶ ।
ନାନାରସେ ଦେଖାନ୍ତି ସେ ବନ ପ୍ରଦେଶ[5] ॥ ୪୦ ॥

ସେ ରାଧାକୃଷ୍ଣ ଚରଣ ପଙ୍କଜେ ନତ ।
ପୁରୁଷୋତ୍ତମ ଅନଙ୍ଗ ଭୀମ ନୃପତି ॥ ୪୧ ॥

---

୧. କୁଟ୍ମଳ = କଳିକା
୨. ପେସିଲେ ( ପୋଥି ପାଠ )
୩. କରିନ୍ଦ୍ର ( „ )
୪. ସହଚରି ( „ )
୫. ପ୍ରବେଶ ( „ )

# ଦ୍ୱିତୀୟ ଛାନ୍ଦ

ରାଗ—ଆହାରୀ[1]

ଏମନ୍ତେ ସକଳ ପ୍ରିୟ ସଖୀକୁଳ
ସଙ୍ଗେ ବୃଷଭାନୁ ଦୁହିତା
କୃଷ୍ଣେ ଦେଇ ମନ କାଳନ୍ଦୀ ସ୍ରବନ୍ତୀ
ତୀରେ କରନ୍ତି ମନ୍ଦଗତି ।
ସଙ୍ଗୀତ ! ଲଳିତା କଳିତ ବଚନା
ନାନା ତରୁ ଲତା ବନସୁର ସୂତା
କରେ କରନ୍ତି ନିବେଦନା ॥ ୧ ॥

ଦେଖରେ ନରେନ୍ଦ୍ର- ନନ୍ଦନା କରୀନ୍ଦ୍ର[2]-
ଗମନା ବୃନ୍ଦାବନ ଦେଶ
ଲଂଘି ନିଜକାଳ ସର୍ବଦା ସକଳ
ଋତୁ[3] କଲେ ଏଥି ନିବାସ ।
ସଙ୍ଗୀତ ! ଯେନ ଏ ବୃନ୍ଦାର ଆବେଶ[4]
ତରୁ ଲତାଗଣ ନିଜ ନିଜ ଗୁଣ
ଯେନ କରନ୍ତରେ ପ୍ରକାଶ ॥ ୨ ॥

ସଖି ଏ ସକଳ ଭବନ ଭବନ
ଭୁବନରୂପେ ମଣ୍ଡିତଳେ
ଏହାର ଭୁବନେ ଭୁବନେ ଭବନ
ଭବନ ପାଇ ତପ ଫଳେ ।
ସଙ୍ଗୀତ ! ପ୍ରକଟ ସୁରଭି ସୁରଭି
ସୁରଭି ସୁରଭି ରସରେ ପ୍ରକଟ
ସହଜେ ନାହିଁ ( ତ ) ସୁରଭି ॥ ୩ ॥

---

୧. ରାଗ ନିର୍ଦ୍ଦେଶ ମୂଳ ପାଠରେ ନାହିଁ
୨. କରନ୍ଦ୍ର ( ପୋଥି ପାଠ )
୩. ରୁତୁ ( ,, )
୪. ଆଦେଶ ( ,, )

ସଖି ଜନଲୋକେ ସାର ଭୂମି ତହିଁ
ସାର ଜମ୍ବୁଦ୍ୱୀପ ଭାରତ[1]
ଖଣ୍ଡ ମଥୁରା- ମଣ୍ଡଳ ତହିଁ ସାର
ବୃନ୍ଦାବନ ନାମ ବହିତ ।
ସଙ୍ଗାତ[2] ! ଏଥୁ ପୁଣି ସୁର ତନୁଜା
ପ୍ରକଟ ଏଥିରେ ପରମ ଆନନ୍ଦ
ନନ୍ଦସୁତ କୃଷ୍ଣ ଭାନୁଜା ॥ ୪ ॥
ଦେଖ ରେ ସଙ୍ଗିନ କୃତାନ୍ତ ଭଗିନୀ
ତରଙ୍ଗ ରଙ୍ଗଣୀ ଯମୁନା
ପ୍ରବାହ ଛଳେ କୁଟିଳ ଗତି କରେ
କରେ ଶ୍ୟାମା ଶ୍ୟାମ[3] କାମନା ।
ସଙ୍ଗାତ ! ନିର୍ମଳ ରସବନ୍ତୀ ହୋଇ
ବାମା ଗୁଣ ଯେଣୁ ସାଗର ନାଗରେ
କୁଟିଳ ଗତି ନ ଛାଡ଼ଇ ॥ ୫ ॥
ସଖି ଏ ସୁର- କୁମାରୀ ସୁକୁମାରୀ
ଅଭିସାର ଗତି ଗୋପନା
ଲତା ପଲ୍ଲବ ଘନପଙ୍କ୍ତି ଆବୃତ
କଣ୍ଟକ ସଙ୍କଟ ଗମନା ।
ସଙ୍ଗାତ ! କୁଞ୍ଜ ପୁଞ୍ଜତରୁ ପଲ୍ଲବେ
ଅନୁସର ଘର ବୃନ୍ଦାବନ ପର-
ବର୍ତ୍ତିନ କଲି ରସ ଭାବେ ॥ ୬ ॥
କନନ୍ଦ ନଗେନ୍ଦ୍ର ନନ୍ଦମା[4] ବୋଲଣ
ଏ ଗୋବର୍ଦ୍ଧନ ନନ୍ଦୀଶ୍ୱର
କୁଳା[5]ଚରଣରେ ଫଳ ପତ୍ର ପୁଷ୍ପ
ସମର୍ପି କରନ୍ତ ଆଦର ।
ସଙ୍ଗାତ ! ପବନ ଜଳ ପୁଣ୍ୟଶୀଳା
ଦ୍ୱିଜବର ସୁଖ- ଦାୟିନୀ ହେଲେ ହେ
ହୋଇଛୁ ପ୍ରଫୁଲ୍ଲ କମଳା ॥ ୭ ॥

---

୧. ଭରତ (ପୋଥି ପାଠ)
୨. ସଘାତ ( ,, )
୩. ଶାମା ଶାମ ( ,, )
୪. ନନ୍ଦନୀ ( ,, )
୫. କୁଳ୍ପା (ପୋଥି ପାଠ).

ସଖି ଏ ବ୍ୟଭିଚାରିଣୀ ନାରୀ ପରାୟେ
ଯରତେ ହେଉଛୁ ଯମୁନା
ଉଭୟ କୂଳ ଅନୁରୋଧ ଗୁଡ଼ ଏ
ବିଟପୀଗଣେ ସଙ୍ଗମନା[1] ।
ସଙ୍ଗାତ ! ଅତି ରସିକା ରସବତୀ
ପୁନ୍ନାଗ ଧବ ନିକଟେ ଥାଇ କଲା
ସାଗର ନାଗରେ ପୀରତି ॥ ୮ ॥

ସଖି ଏ କାମ- କଳା କେଳି ମଣ୍ଡନା
ହୋଇଛୁ ଯମୁନା କାମିନୀ
ଫେଣ ଶୈବାଳ ବଦନ କମଳ
ଚକ୍ର ଯୁଗଳ ସ୍ତନ ବେନି ।
ସଙ୍ଗାତ ! ସଭୃଙ୍ଗ ଉତ୍ପଳ ନୟନା
ମକର କେତନେ ତରଳିତ ତନୁ
ପୃଥୁଳ ପୁଳିନ[2] ଜଘନା ॥ ୯ ॥

ସଖି ଏ ଅବନୀ ବନିତାର ଅବା
ଶିଥିଳ କୁଟିଳ କୁନ୍ତଳ
କି ଅବା କୋଳ କେଳି ବିଯୋଗରୁ ଏ
ବହେ ଅଶ୍ରୁ[3] ଜଳ କଜ୍ଜ୍ୱଳ ।
ସଙ୍ଗାତ ! ଦେଖି ଏ ପୀତବାସ ପାଶ
ନନ୍ଦୀଶ୍ୱର ଗୋବ- ର୍ଦ୍ଧନ ଗିରିସ୍ତନ
ଆବୃତ କଲା ନୀଳ ବାସ ॥ ୧୦ ॥

ସମ୍ବର ପୁର ସୁନ୍ଦରୀ ଏ କୁଟିଳା
ସଖି ଏଣୁ କାମ କାମିନୀ
ଉଡ଼ୁପତିରେ ଆଲମ୍ବନ ଏହାର
ଏଣୁ ଚନ୍ଦ୍ରକର ଯାମିନୀ ।
ସଙ୍ଗାତ ! ପଦ୍ମବାସିନୀ ପଦ୍ମରତା
ମଧୁରେ ମଧୁ- ସୂଦନ ବଶ କଲା
କମଳା ଏ ହରି ବନିତା ॥ ୧୧ ॥

---

୧. ମେଳା ( ପୋଥି ପାଠ )
୨. ପ୍ରଜନ ( „ )
୩. ଅସ୍ର ( „ )

ସଖି ଏ ଦ୍ୱିଜବର ସୁଖ ଦାୟିନୀ
ସ୍ୱରଜା ପରମ ପବନୀ
ବହୁ ଶ୍ରୁତି ଗଣ ଆଶ୍ରୟ କାରଣ
ସରଣୀ ଏଣୁ ଏ ସାବନୀ ।
ସଙ୍ଗାତ ! ନବେଷ୍ଟ ଏ ଗିରିଜା ଗିରିଜା
ବିନାୟକ ସୁଖ[1] ଜନନୀ ନିକଟେ
ଲଭନ୍ତି ନନ୍ଦୀଶ୍ୱର ପୂଜା ॥ ୧୨ ॥

ସଖି ଏ ବହୁ ନାଗର ସୁଖକାରୀ
ବସୁମତୀ ରତି ଦାୟିକା
ଗନ୍ଧର୍ବ ଧରଣୀ[2] ପ୍ରକାମ ସନ୍ତାପ
ହାରିଣୀ ଏ ସୁର[3] ନାୟିକା ।
ସଙ୍ଗାତ ! ଏ କଳାବତୀ ରସବତୀ
ଅମୃତ ଆକର ଗୁରୁ ଶୀତକର
ସ୍ୱଭାବେ ଘନ ଚନ୍ଦ୍ରକାନ୍ତ ॥ ୧୩ ॥

ବନ ବର୍ଣ୍ଣନା—

ଦେଖ ଏ କଦମ୍ବ କୁସୁମ କଦମ୍ବ
ସମ୍ବର ପର ଛଡ଼ା ଶର
ହେରମ୍ବ ପ୍ରଳମ୍ବ କର ଅବଲମ୍ବ
କଲେ କି ମୋଦକ ନିକର ।
ସଙ୍ଗାତ ! କି ଏ ମାର କେଳି କନ୍ଦୁକ ।
ଏଥି କ୍ରୀଡ଼ା କରି ଅଭିନବ କାମ
ଫିଟାଇ ହୃଦୟ ସିନ୍ଧୁକ[4] ॥ ୧୪ ॥

ଦେଖ ଏ ଚମ୍ପକ ପ୍ରଫୁଲ୍ଲ ଚମ୍ପକ
ଶ୍ରେଣୀ ସୁବେଣୀ ତନୁ ପ୍ରାୟେ
ଅଳକ କେଳି କଳରେ ସଳି ମଣି
ନ କଲି ରତିକାନ୍ତ ଭୟେ ।
ସଙ୍ଗାତ ! କି ଲଭି ମଧୁପ ପଟଳେ
ବିଶ୍ୱ ଅଭିରାମ ନବଘନ ଶ୍ୟାମ[5]
ଥିଲେ ତୋ କୁନ୍ତଳ କୁଣ୍ଡଳେ ॥ ୧୫ ॥

---

୧. ମୁଖ ( ପୋଥି ପାଠ )
୨. ଭରଣି ( „ )
୩. ଏ ସର ( „ )
୪. ସିନ୍ଧୁକ ( ପୋଥି ପାଠ )
୫. ଶାମ ( „ )

ଦେଖ ରେ କେତକ- ବରନା କେତକ
ବର ନାସ୍ତ ରୁଚି ରୁଚିର
ହର ଫର କର କରତ ଆକାର
ଦେଖି କରେ ମାର ବିକାର ।
ସଙ୍ଗାତ ! ଏଣୁ ତେଜିଲେ ସ୍ମର ହର
କାମ ଉଦ୍ଦୀପନ ପରାଗ ଭୂଷଣ
ଏଣୁ ବନ୍ଧୁ ରତି ବନ୍ଧୁର ॥ ୧୬ ॥

ଦେଖ ମାଳକଣ୍ଠ ଚନ୍ଦ୍ରକ ମୁକୁଟ
ତାଣ୍ଡବେ ହୋଇଛନ୍ତି ଆବେଶ
ମାଳ ଲେହ୍ଲିତାଙ୍ଗ ଧରନ୍ତି ଭୁଜଙ୍ଗ
ସଖି ଏ ମହେଶ ସଦୃଶ ।
ସଙ୍ଗାତ ! ଉପକଣ୍ଠରେ ନାଗେଶ୍ୱର
ବହ୍ନି ଏ ବାସ ଉତ୍ସର୍ଗ[1] କରିବାରୁ
ବନ ହିଁ ପ୍ରଶାନ୍ତ ଈଶ୍ୱର ॥ ୧୭ ॥

ଦେଖ ଏ ରସାଳ ଶାଳ ପ୍ରିୟଶାଳ
ତାଳ ତମାଳ ଦଳ ଜାଳ
ସବଳ ସୁବଳ ସକଳ ଗୋପାଳ
ଗୋପାଳ କେଳି ସୁଖ ମୂଳ[2] ।
ସଙ୍ଗାତ ! ଫଳ ଦଳ ତଳ ବଲ୍କଳ
ଉଚିତ ଉପଯୋଗରୁ କୃଷ୍ଣ ଶତ୍ରୁ
ହରନ୍ତି ନିତ୍ୟ କେଳି ନାଳ ॥ ୧୮ ॥

ଦେଖ ରେ ନବ- ନାଗର ଏ କିଂଶୁକ
ସୁର ଶୁକ ଚଞ୍ଚୁ ଆକାର
ସୁବର୍ଣ୍ଣ ସ୍ତନ ଦାଡ଼ିମ ବିଦାରି ଏ
ଶୋଣ ରୁଚି ଫର ସୁନ୍ଦର ।
ସଙ୍ଗାତ ! କି ଅବା ମାର କର୍ତ୍ତିଶର
କାମୀ କାମିନୀ ହୃଦୟ କାଳ ଫଳ
ଦଳି କୃଷ୍ଣସାର ଅନ୍ତର ॥ ୧୯ ॥

---

୧. ଉଚ୍ଛର୍ଗ ( ପୋଥି ପାଠ )
୨. ମୂଳ ( „ )

ସଖି ଏ ମାଧବ ଆଗମନୁଁ ଆଗ
ପ୍ରଫୁଲ୍ଲ ହୋଇଛୁ ମାଧବୀ
ସଙ୍ଗମେ ବାସ ଦୂରତର ପ୍ରକାଶ
ଏଣୁ ଏ କାମର ବାନ୍ଧବୀ ।
ସଙ୍ଗାତ ! ତୋର ସ୍ୱଭାବ ଭବ ଭାବ
ମାଧବ ଆତୁର ବେଗ ଗତି କର
କୁଞ୍ଜକୁ ମାଧବ ସାଧବୀ ॥ ୨୦ ॥

ଦେଖ ଚମ୍ପକ ଲତାରେ ଅପ୍ରକଟ
ପତ୍ରାବଳୀରେ ହେମକାନ୍ତ
ଗଣିକା ବୋଲି କାମବଶେ ବସିଲେ
କେଳି ଜଳରେ ଭୃଙ୍ଗପନ୍ତ ।
ସଙ୍ଗାତ ! ଦେଖ ଏ ମୁନି ତରୁଁ ଶାଖା
କଳିକା କୁଳ କଳିତ ବନ୍ଧୁରୂପୀ
ହେଲ କି ଏଥି ଇନ୍ଦୁଲେଖା ॥ ୨୧ ॥

ଦେଖରେ ସଙ୍ଗାତ ପଲ୍ଲବିତ ଚୂତ-
ତରୁରେ ମଞ୍ଜରିତ ଶାଖା ।
କଳ କଣ୍ଠ ଗୀତି କଣ୍ଠ କୁଣ୍ଠ ନାଶି
ଏଣୁ ସନ୍ଧକାଶ୍ୱ ବିଶାଖା ।
ସଙ୍ଗାତ ! ଏ ସୋମବଲ୍ଲୀ ସୁପତ୍ରକା
ତରୁ ଆଲମ୍ବୀ ଯମୁନା ରୋଧ ଲମ୍ବୀ
ଚିତ୍ର ଶୋଭମା ଏଣୁ ଚିତ୍ରା ॥ ୨୨ ॥

ଦେଖ କର୍ଣ୍ଣିକାର ପ୍ରଫୁଲ୍ଲ ପ୍ରକର
ଭାବେ ସର୍ବାଙ୍ଗ ଭଙ୍ଗ ଛବି
କି ଅବା ବନ- ପାଳିକା ପ୍ରକଟିତ
କୁଞ୍ଜ ରୂପିଣୀ ରଙ୍ଗ ଦେବୀ ।
ସଙ୍ଗାତ ! ରଙ୍ଗ ପୁଷ୍ପବର୍ଣ୍ଣ ଧବ ।
ଘନ ପତ୍ରାବଳୀ ମାଳ ପଞ୍ଚଶାଳୀ
କାନନରେ[୧] ଦେବ ସୁଦେବୀ ॥ ୨୩ ॥

---

୧. କାମନରେ ( ପୋଥି ପାଠ )

ଦେଖ ଏ ତମାଳ ତରୁ ଶିଖ ଜାଳ
ଆରୋହି କୋମଳ ବଚନା
ଶ୍ରୁତି ସୁଖ ପ୍ରଦା କି ଏ ଭୁଜଙ୍ଗ ବିଦ୍ୟା
ପଠନ କରେ ଖଗାଙ୍ଗନା[1] ।
ସଙ୍ଗାତ ! ଦେଖ ଏ ମଞ୍ଜରୀ ନିକର
ନିଜ କୁଞ୍ଜ ପୁଞ୍ଜ ଆଚ୍ଛାଦ ମଣ୍ଡନ
କଲେ ଏ ବାହାର ଅନ୍ତର ॥ ୨୪ ॥

ଦେଖ ରେ ନାଗର ଲବଙ୍ଗ ମଞ୍ଜରୀ
କୃଷ୍ଣ ଭୃଙ୍ଗରେ ଆସକତ
ପ୍ରେମ ସଞ୍ଚରଣ ଅସ୍ଫୁଟ କରଣ
ଲୋଡ଼ଇ ଏ କାନ୍ତ ଏକାନ୍ତ ।
ସଙ୍ଗାତ ! ଅନୁଭବରେ ଘନରସ
ଘଟନେ ଗୁପତ କଲେ ହେଁ ଆକାରୁ
ସ୍ୱଭାବ କରଇ ପ୍ରକାଶ ॥ ୨୫ ॥

ଦେଖ ରେ କୁନ୍ଦ- ରଦନା କୁନ୍ଦଲତା
ସ୍ଫୁଟ କୁଟେ ବୋଲେ ମୁକୁନ୍ଦ
ମତେ ଭଜ 'ନିଜ ଗୁଣରେ ରଞ୍ଜନ
ଏ କୁରୁବକ ଅରବିନ୍ଦ ।
ସଙ୍ଗାତ ! ରୂପେ ଶୃଙ୍ଗାର ରସାବଳୀ
ଏଣୁ ମୋ ରୁପକୁ ଉପମା କରନ୍ତି
ସୁନ୍ଦରୀଗଣ .ଦନ୍ତାବଳୀ ॥ ୨୬ ॥

ସଖି ତରୁଣ ଧବ କଲା ଆଶ୍ଳେଷ
ଦେଖ ଏ ବିଳାସ ମଞ୍ଜରୀ
ତଥାପି ସୁମନା ଭୃଙ୍ଗ ଚୁମ୍ବିବାରୁ
ମଣିଲ ବ୍ୟଭିଚାରୀ ନାରୀ ।
ସଙ୍ଗାତ ! ବକୁଳ କୂଳକୁ ଆବୋରି
ସୁମନସରେ[2] ସୁମନ ଶରେ କଲା
ନିଆଳିକ ଗୁଣ ମଞ୍ଜରୀ ॥ ୨୭ ॥

---

୧. ଜଗାଙ୍ଗନା ( ପୋଥି ପାଠ )
୨. ଭ୍ରମରସରେ ( „ )

ସଖି ଦେଖ ଏ ଜାତି ଯୂଥି ସେବତି
ବକୁଳ ମାଳତି ସୁମନା
ପ୍ରେମ ମଧୁରେ କୃଷ୍ଣ- ଭୃଙ୍ଗ ମୋହିଲେ
ଏଣୁ ଏ ପ୍ରଫୁଲ୍ଲିତ ମନା ।
ସଙ୍ଗାତ ! ରସେ ବଶ ହେଲେ ବଲ୍ଲଭ
ରସବନ୍ତି କର ଅଧୀନ ଏବେ ଏ
ସମସ୍ତ ଭାବରେ ସୁଲଭ ॥ ୨୮ ॥

ଏମନ୍ତେ ନାନା- ରସରେ ବିହରନ୍ତେ
ଦେଖିଲେ ଗୋବର୍ଦ୍ଧନ ଗିରି
ପଣିହାସ ହାସୀ ଛଳ ବନ୍ଧ ଭାଷୀ[୧]
କହନ୍ତି ସୁବୋଧା ଚତୁରୀ ।
ସଙ୍ଗାତ ! ଧନ୍ୟ ଧନ୍ୟ ଏ ବୃନ୍ଦାବନ
ଯାହା ଗୁଣ ପୁଣ କରି ଆଭରଣ
ହୋଇଛନ୍ତି ଅବନୀ ଶୋଭନ ॥ ୨୯ ॥

ଗୋପ ନଗର ନଗର ଶୋଭା ଦେଖି
ସାନ୍ଦ୍ର ଘନଶ୍ୟାମ ସୁନ୍ଦର
ଗୋପାଳୀ ସୁଖକର ଗୋପ ବିପଦ
ନାଶକାରି[୨] ବ୍ୟାସ-କନ୍ଦର ।
ସଙ୍ଗାତ ! ହରି କେଳି ଦରି ନିକର
ଏହା ଆଶ୍ରୟରୁ ବ୍ରଜବାସୀ ଜନ
ମାନନ୍ତି ନାହିଁ ସୁନାଶୀର ॥ ୩୦ ॥

ଅଧ ଊର୍ଦ୍ଧ୍ୱ ମଧ୍ୟ- ଦେଶକୁ ଆରୋହି
ରହିଛନ୍ତି ତରୁ ପ୍ରକର
ଯେସନ ନିଜ ପୁଣ୍ୟ ତାରତମ୍ୟରୁ
ସ୍ୱର୍ଗବାସୀ ଜୀବ ନିକର ।
ସଙ୍ଗାତ ! ଯେ ଯାହା ଫଳମାନ ଘେନି
ବଲ୍ଲୀ ପ୍ରିୟାଗଣ କରି ଆଲିଙ୍ଗନ
ବିମାନ ସ୍ଥିତିରୁ ବିମାଣ ॥ ୩୧ ॥

---

୧. ଲୁଝି ( ପୋଥି ପାଠ )
୨. ନାଶି ( „ )

ସଖି ଏ ପୟୋଧର ଆଲମ୍ବନ ଷୁଚ
ମହା ଭୋଗର ଆଧାର
ଏଣୁ ଏ ଅନନ୍ତ ତନୁ ବଳ ଗତ
ମନ୍ଦାଧର ମଣି ଶିଖର ।
ସଙ୍ଗାତ ! ହରି ସୁଖକର ଉତ୍ସଙ୍ଗ
ପ୍ରକଟ ପରମ ଲକ୍ଷ୍ମୀ କଳ୍ପତରୁ
ମଣ୍ଡନ କଲେ ଯାର ଅଙ୍ଗ ॥ ୩୨ ॥

ଏ ନୋହେ ବିହଙ୍ଗ ସାରଙ୍ଗ କୁରଙ୍ଗ
ଭୁଜଙ୍ଗ ଅଙ୍ଗ ସଙ୍ଗ ଦୋଷୀ
ବିକାର ଧିକ୍କାର- କର ସର୍ବ ଜୀବ
ଯହିଁରେ ବିଷ୍ଣୁ ପଦବାସୀ ।
ସଙ୍ଗାତ ! ହରି ବିହାର ସୁଖକାରୀ
ସୁରଭି ବୃନ୍ଦ ଆନନ୍ଦ କାରଣ ଏ
ଗୋଲୋକ ଗୋବର୍ଦ୍ଧନ ଗିରି ॥ ୩୩ ॥

ଦେଖ ମୁନିବର ପ୍ରାୟେ ଗିରିବର
ଉପରେ ତରୁବର କୂଳ
ଶିଳାତଳ ବାସ କ୍ଷିତି ଦିଗ ବାସ
ଚେତିଲେ ତପ ପାକ ଫଳ ।
ସଙ୍ଗାତ ! ଶୀତ ବାତ ଘର୍ମ ବରଷା
କ୍ଷୁଧା ତୃଷା ସହି ଅଚଳରେ ରହି
ନିରବଲମ୍ବ ପ୍ରଭୁ ଆଶା ॥ ୩୪ ॥

ସଖି ଏମନ୍ତ ପରତେ ହେଉଛି ଏ
ଗୋବର୍ଦ୍ଧନ ସୁର ନାୟକ
ଐରାବତ ବଳ ମେଘ ବାହନ
ସହସ୍ରାକ୍ଷ ସୁଖଦାୟକ ।
ସଙ୍ଗାତ ! ସର୍ବସତ୍ତ୍ୱ ସୁଖ ଆଧାର
ଏଣୁ ଦ୍ୱିଜବର ଆହ୍ଲାଦକର
ଅମୃତନିଧି ଶୀତକର ॥ ୩୫ ॥

ବହୁ ସୁମନ ସପ୍ରକାଶ ଏଥିରେ
ଏଣୁ ଏ ଅମର ନଗଶ୍ରୀ
ଜାମ୍ବୁନଦ ଜଳ ସ୍ଥଳରେ ସୁନ୍ଦର
ଏଣୁ ମଣାଇ ମେରୁଗିରି ।
ସଙ୍ଗାତ ! ନାନା ନିଧି ରତ୍ନ ପ୍ରକାଶ
ଗିରିଜା ବିଳାସ ଦିଗମ୍ବର ବାସ
ଏଣୁ ଏ ଗିରି କଇଳାସ ॥ ୩୬ ॥

ସଖି ଏ ଶିଖଣ୍ଡ ସ୍ୱର୍ଗ ଯେଣୁ[1] ସର୍ବ
ଦ୍ୱିଜ କର୍ମ ଫଳଦାୟକ
ଗନ୍ଧର୍ବଗଣ ଯହିଁଂରେ[2] କେଳି କରେ
ନବୀନ କୁସୁମ ସାୟକ ।
ସଙ୍ଗାତ ! ଯହିଁଂରେ ରମ୍ଭା ଉରସବନ୍ତି
ହରିଚନ୍ଦନ ତରୁରେ ବିଳସିତ
ଗନ୍ଧବହ ରସ ଆରତି ॥ ୩୭ ॥

ସଖି ଏ କୋମଳ ତୃଣ ଦଳ ଫଳ-
ଜାଳ ଜଳ ଉପଯୋଗରୁ
ଗୋକୁଳେ ସୁଖ- ଭୋଗ ଗର୍ବେ ପର୍ବତ
ଭାବେ ନ ମାନନ୍ତି ନମେରୁ ।
ସଙ୍ଗାତ ! ଏଣୁ ଏ ଧର ସାଧୁବର
ମହା ସତ୍ତ୍ୱବନ୍ତ ହରି ପଦେ ରତ
ନିସର୍ଗ ରସେ ଜର ଜର ॥ ୩୮ ॥

ଏହି ପ୍ରକାରେ ନାନା ରସ ଗୃହୁଣୀ
ଛଳ ରସ ବନ୍ଧ ଭରଣୀ
ଭାଷଣ କରି କେ ଶୋଷଣ[3] ଛଳରେ
ଭୂଷଣ ଦୂଷଣ କରନ୍ତି ।
ଏମନ୍ତେ, ମିଳିଲେ ଗହନ ଅନ୍ତରେ ।
ଯହିଁରେ ମଧୁ- ମଙ୍ଗଳ ତୁଳସିକା
ସଙ୍ଗେ ମାଧବ ଏକାନ୍ତରେ ॥ ୩୯ ॥

---

୧. ଜେଣୁ ( ପୋଥି ପାଠ )
୨. ଜହୁରେ ( „ )
୩. ସୋଷଣ ( „ )

ବକୁଳ ବାଟିକା                    ମଧ୍ୟେ ଧନଷ୍ଟିକା
    ଦେଖି ରାଧିକା ଏକାନ୍ତରେ
କୁସୁମ ମାଳିକା                    ସଭୁଙ୍ଗ ପାଳିକା
    ଦେଇ ଯୂଥିକା କୁଞ୍ଜାନ୍ତରେ ।
  ସଙ୍ଗାତ ! ମାଧବ ଶୋଭା ଦେଖ ସଖି
ବୃନ୍ଦାବନେ ନନ୍ଦ-                    କୁମାରଙ୍କୁ ମାର
    ନରେନ୍ଦ୍ର ପଣେ ଅଛି ରଖି ॥ ୪୦ ॥

ଶୁଣ ରେ' ବାନ୍ଧବ                    ଛଟେ ନର ଦେବ—
    କଣ ସେ ମାଧବୀ କୁଞ୍ଜରେ' ।
ଦେଖ ରେ ବକୁଳ                    ମାଳ ଦେଲେ ( ଗଳେ )
    ( ଚାର ) ପଠଣାଳୀ ✳ ବ୍ୟାଜରେ ।
  ସଙ୍ଗାତ ! ଆଜ୍ଞା ଦେଲେ ମୋର ଜୀବନ
ଜୀବନ ବନ୍ଧୁ                    ସଖୀଗଣ ସଙ୍ଗରେ
    ରକ୍ଷାକରୁ ଆସି ବନ୍ଧନ ॥ ୪୧ ॥

ଏହି ନିକଟରେ                    ତୋ କୁଣ୍ଡ ତଟରେ
    କାମ ସଙ୍କଟରେ ମୁରାରି
ପାଇ ସେ ବେଦନା                    ଏହି ନିବେଦନା
    କରନ୍ତି କର ପ୍ରିୟା ପାରି ।
  ସଙ୍ଗାତ ! ତୋର କ୍ଷଣ ମାତ୍ର ବିଯୋଗ
କୋଟି କୋଟି ଯୁଗ                    ସମ ପନ୍ଥୀଁ ଭୋଗ
    ଦୁଃସହ କୁସୁମ ଆଶୁଗ ॥ ୪୨ ॥

ତୋର ରୂପ ଗୁଣ                    ଗୁଣି ଗୁଣି ପୁଣି
    ପୁଣି ହୋଇ କାମେ କାତର
ମନ ନୟନ ତୋ                    ଧ୍ୟାନ ପଥେ ରଖି
    ଦହଇ ଦେହ ହର ପର ।
  ସଙ୍ଗାତ ! ତୁଳସୀ ଶୀତଳ ସୁଶାଳ
କରନ୍ତି କେବଳ                    ତୋ ରାଗ ମଙ୍ଗଳ
    ବାଣୀ କହି ମଧୁମଙ୍ଗଳ ॥ ୪୩ ॥

---

୧. ସୁଣ ରେ ( ପୋଥି ପାଠ )                    ୨. କୁନ୍ତରେ ( ପୋଥି ପାଠ )

✳ ପଞ୍ଚଶାଳୀ – ପାଟଶାଳିଆ = ଗଞ୍ଜାମ ଜିଲ୍ଲାର 'ପାଟଶାଳି' ନାମକ ସ୍ଥାନର ତନ୍ତମାନଙ୍କ ହାତବୁଣା ସୂତାର ଖୁବ୍ ସରୁ ଲୁଗା ।

ଏ ବାଣୀ ଶୁଣି ରମଣୀ ମଣି ମଣି
* ପୁଣି କାନ୍ତ ଦୁଃଖେ କାତର,
ଏଣୁ ଛିଦ୍ର ଧରି ପଞ୍ଚଶର ଲକ୍ଷ
ଲକ୍ଷ୍ୟକରି କଲା ପ୍ରହାର ।
ଏଣୁ ସେ, ହତ ଚେତନ ପ୍ରେମଶୀଳା
କେବଳ ସଖୀ ତନୁ ଆଲମ୍ବନରୁ
ହେଲା ଅବଳା ଧୃତଶୀଳା ॥ ୪୪ ॥

ଲଳିତା ବୋଲନ୍ତି ଶୁଣ ରେ ସୁଦନ୍ତି
କାନ୍ତ କାମ ବ୍ୟାଧି ଅବଶ
ତୋର ଅଙ୍ଗ ସଙ୍ଗ ରତି ରସ ରଙ୍ଗ
ବାରତା ରସାୟନ ରସ ।
ଧରେଣ ! କରୁ ନେଇ ରସ ମଞ୍ଜୁଷ
ତୋର ପ୍ରବେଶ ଆଦେଶ ପାଇ କାନ୍ତ
ରହିବେ ଚିତ୍ତ ସ୍ଥିର କରି ॥ ୪୫ ॥

ରାଧା ଅଧର ସୁଧା ପାନେ ସନ୍ତତ
ତୃଷିତ ମାନସ ଚକୋର
ନବଘନ ଶ୍ୟାମ ତନୁ ଅନୁପମ
ଯାର ଅତନୁ ତନୁ ଧର ।
ସେ ଭାନୁ-ନନ୍ଦିନୀ ସେ ନନ୍ଦନନ୍ଦନ
ପାଦ ଧ୍ୟାନ କରି ଭଣେ ନୃପ ହରି
ଶ୍ରୀପୁରୁଷୋତ୍ତମ ରାଜନ ॥ ୪୬ ॥

---

# ତୃତୀୟ ଛାନ୍ଦ

ରାଗ—ବଙ୍ଗଳାଶ୍ରୀ

ଏମନ୍ତେ ସେ ସବୁ ସହଚରୀ ସଙ୍ଗେ
କୃଷ୍ଣେ ଦେଇ ମନ ଧ୍ୟାନ ।
ରସ ମଞ୍ଜରୀକ ପ୍ରିୟପାଶେ ପେଷି
କରନ୍ତି ବନେ ଗମନ ॥ ୧ ॥

ସୁଲଭେ ବଳ୍ଲଭ ଲଭିବାର ଲୋଭ
କହି ଲଳିତା ନାଗରୀ
ବୃନ୍ଦାବନ ଦେଶ ସମସ୍ତ ହରଷେ
ପ୍ରକାଶ କଲା ଚାତୁରୀ ॥ ୨ ॥

ଏହି ପ୍ରକାରେ ନାନା ରସେ ଗଲେ ସେ
ବସନ୍ତାମୋଦନ ବନ ।
ଘନ ଘର୍ମ ବନ 'ବରଷା[୧] ହରଷେ'[୨]
ପ୍ରବେଶ ସକଳ ଆଳି ॥ ୩ ॥

ବୋଲନ୍ତି ବିଶାଖା ଦେଖ ସଖି ଲେଖା—
ଧିପର ପରମ କ୍ଷଣ ।
ପୁଷ୍କର [ ରସା ] ଦ୍ରୋଣା- ବର୍ତ୍ତିକ ସଂବର୍ତ୍ତିକ
ଘନ କଲେ ଆବେଦନ ॥ ୪ ॥

ନିର୍ଗୁଣ ଧନୁ ଏ ନାନା ବର୍ଣ୍ଣ ରୂପ
ଗୁଣରେ ପ୍ରକାଶ କଲା ।
ବିଜୁଳି ଝମକ ଠଙ୍କାରେ ଏ ଘନ
ଘନରସ ଚେତାଇଲା ॥ ୫ ॥

ଦେଖ ନବରସି ବରଷି ବରଷି
ବରଷା ଏଥୁ ନ ଯାଇ ।
ବରଷ ବର ଭରତ ଖଣ୍ଡ ଏହି
ବନ ମହିମାକୁ ପାଇ ॥ ୬ ॥

---

୧. ବରଷା ( ପୋଥି ପାଠ )
୨. ହରଷେ ( ,, )

ସଭଙ୍ଗଯମକ[1] —

ରଜନୀକର ଆସାରେ ଲୁଚ୍ଛଇଲ
ଦଶଦ୍ରୁ ବର ସଚ୍ଚାପ ।
ରଜ ନୀକର ଆସାରେ ଲୁଚ୍ଛଇଲ
ଦଶ ଦ୍ରୁବ ରସ ଚାପ ॥ ୭ ॥

କାଦମ୍ବିନୀ ରସ- ପ୍ରସର ଦେଖିଣ
ହଳଧର ମନ ତୋଷ ।
କାଦମ୍ବିନୀ ରସ ପ୍ରସର ଦେଖିଣ
ହଳଧର ମନ ତୋଷ ॥ ୮ ॥

ଦେଖି ଶ୍ୟାମଘନ ରସ ଉଦ୍ଦୀପନ
ଚଞ୍ଚଳା ଯୁବତୀ ମତି ।
ଦେଖି ଶ୍ୟାମଘନ ରସ ଉଦ୍ଦୀପନ
ଚଞ୍ଚଳା ଯୁବତୀ ମତି ॥ ୯ ॥

ପ୍ରବଳ ଆସା- ର ଶୀକରେ[2] ଜଡ଼ ଏ
ମାରଜ ମାରଜବତୀ ।
ପ୍ରବଳ ଆଶା[3] ରସିକରେ ଜଡ଼ ଏ
ମାରଜମାରଜବତୀ ॥ ୧୦ ॥

ଦେଖ ଅହର୍ନିଶି ପୁଷ୍ପବନ୍ତ ସ୍ଥାନ
ନଗରେ ବିଟପୀଗଣ ।
ଦେଖ ଅହର୍ନିଶି ପୁଷ୍ପବନ୍ତ ସ୍ଥାନ
ନଗରେ ବିଟପୀ ଗଣ ॥ ୧୧ ॥

ଅଚ୍ୟୁତ କମଳା- କର କମଳରେ
ଅନନ୍ତ ଅଙ୍କରେ ବଧୂ ।
ଅଚ୍ୟୁତ କମଳା କର କମଳରେ
ଅନନ୍ତ ଅଙ୍କରେ ବଧୂ ॥ ୧୨ ॥

---

୧. ମଦ୍ଧା ଯମକ ( ପୋଥି ପାଠ )
ଯେଉଁ ଶବ୍ଦାଳଙ୍କାରରେ ପ୍ରବନ୍ଧର ପ୍ରଥମ ଚରଣ ଓ ଦ୍ୱିତୀୟ ଚରଣର ପଦମାନ ଏକ ଶୃଙ୍ଖଳାରେ ବ୍ୟବହୃତ ହୋଇ ଭିନ୍ନାର୍ଥବୋଧକ ହୋଇଥାଏ ତାକୁ 'ସଭଙ୍ଗଯମକ' ବୋଲାଯାଏ ।

୨. ରସିକରେ ( ପୋଥି ପାଠ )

୩. ଆସା ( ,, )

ଭୁବନ ଘନ କଳୁଷ ଦେଖି କଲେ
ହଂସ ମାନସରେ ଗତି ।
ଭୁବନ ଘନ କଳୁଷ ଦେଖି କଲେ
ହଂସ ମାନସରେ ଗତି ॥ ୧୩ ॥

ପ୍ରଫୁଲ୍ଲ କାଦମ୍ବ ଶ୍ରେଣୀ କାନ୍ତି ଦେଖ
ମାଳାମ୍ବର ରୁଚିକର ।
ପ୍ରଫୁଲ୍ଲ କାଦମ୍ବ ଶ୍ରେଣୀ କାନ୍ତି ଦେଖ
ମାଳାମ୍ବର ରୁଚିକର ॥ ୧୪ ॥

ସଖି ଏ ସୁର ସୁଘନ କଳୁଷିତ
ଏଣୁ ଅପ୍ରକଟ ପ୍ରଭା ।
ସଖି ଏ ସୁର- ସୁ ଘନ କଳୁଷିତ
ଏଣୁ ଅପ୍ରକଟ ପ୍ରଭା ॥ ୧୫ ॥

ଅପଲ୍ଲବ ତରୁ ପଲ୍ଲବେ ମଣ୍ଡିତ
ପ୍ରଶାନ୍ତ ମରୁତ ପନ୍ତ ।
ଅପଲ୍ଲବ ତରୁ ପଲ୍ଲବେ ମଣ୍ଡିତ
ପ୍ରଶାନ୍ତ ମରୁ ତପନ୍ତ ॥ ୧୬ ॥

ନକ ସଗ୍ରହ ସଂବର ପ୍ରସରଣେ
ଲୁଚିଲେ ଅବ୍ଧି ମକର ।
ନକ ସଗ୍ରହ ସମ୍ବର[1] ପ୍ରସରଣେ
ଲୁଚିଲେ ଅବ୍ଧିମକର ॥ ୧୭ ॥

କୃଷ୍ଣ ଘନ ରସ ପ୍ରସର ପ୍ରକାଶ
ସୁରଭି ଭୁବନ ସ୍ଥଳ ।
କୃଷ୍ଣ ଘନ ରସ ପ୍ରସର ପ୍ରକାଶ
ସୁରଭି ଭୁବନ ସ୍ଥଳ ॥ ୧୮ ॥

ଦେଖ ଏଥି ଋତୁ- କାଳ ନ ମାନନ୍ତି
ମନୋଜ ବରଷାବଳୀ[2] ।
ଦେଖ ଏଥି ଋତୁ କାଳ ନ ମାନନ୍ତି
ମନୋଜ ବରଷାବଳୀ[3] ॥ ୧୯ ॥

---

୧. ସମ୍ବରଣ ( ପୋଥି ପାଠ )
୨. ବରସାବଳୀ ( ,, )
୩. ବରସାବଳୀ ( ,, )

ଇନ୍ଦ୍ରଗୋପ ମଣ୍ଡି ତଳେ ପ୍ରକାଶିଲେ
ଅନୁରାଗ ପଞ୍ଚବାସ ।
ଇନ୍ଦ୍ର ଗୋପମଣ୍ଡି ତଳେ ପ୍ରକାଶିଲେ
ଅନୁରାଗ ପଞ୍ଚବାସ ॥ ୨୦ ॥

ଶିଳୀମୁଖ ରବ ସୁଧା ଘନ ପୁଷ୍ଟ
ଯୋଗରୁ ଶ୍ରୁତି ମଣ୍ଡିଲ ।
ଶିଳୀମୁଖ ରବ ସୁଧା ଘନ ପୁଷ୍ଟ
ଯୋଗରୁ ଶ୍ରୁତି ମଣ୍ଡିଲ । ॥ ୨୧ ॥

ଜଳଜ ରଜରେ ପଦ ଜଡ଼ବାରୁ
ବଲ୍ଲୀନ ମଧୁପ ବନେ ।
ଜଳ ଜର ଜରେ ପଦ ଜଡ଼ବାରୁ
ବଲ୍ଲୀନ ମଧୁପ ବନେ ॥ ୨୨ ॥

ପଦ ପଦକେ ବନ ଶୋଭା ଦେଖନ୍ତେ
ମିଳଲେ ଆନ ପ୍ରଦେଶେ ।
ଶରଦା ମୋଦ ନାମ ଯହିଁ ଗୋବନ୍ଦ
ରାସ କେଳି କଲେ ରସେ[1] ॥ ୨୩ ॥

ବୃନ୍ଦାବନରେ ପ୍ରକଟ କଲା ସଖୀ
କୁମୁଦକୁ ମୁଦକର ।
ବୃନ୍ଦାବନରେ ପ୍ରକଟ କଲା ସଖି
କୁମୁଦ କୁମୁଦକର ॥ ୨୪ ॥

ସୁମନସରେ ପ୍ରକାଶ ବନ ଦେଖ
ଏଣୁ ଏ ଶରଦା ମୋଦ ।
ସୁମନଶରେ[2] ପ୍ରକାଶ ବନ ଦେଖ
ଏଣୁ ଏ ଶରଦା ମୋଦ ॥ ୨୫ ॥

ପ୍ରକଟ ହଂସ ଗତିରୁ ପଦ୍ମାକର
ସୁନ୍ଦର ଅମଳ ଜଳ ।
ପ୍ରକଟ ହଂସ- ଗତିରୁ ପଦ୍ମାକର
ସୁନ୍ଦର ଅମଳ ଜଳ ॥ ୨୬ ॥

---

୧. ରଙ୍ଗେ ( ପୋଥି ପାଠ )
୨. ସୁମନସରେ ( ,, )

ଏମନ୍ତେ ହେମନ୍ତ ସାମନ୍ତ ବଳଲେ
ଶିଶିରାକରେ ପ୍ରବେଶ ।
କୁତୁକେ ଦେଖି ଚଳନ୍ତେ ଦେଖିଲେ ସେ
ଗୋବିନ୍ଦ ପଦ ବିନ୍ୟାସ ॥ ୨୭ ॥

ଧ୍ୱଜ ବଜ୍ରାଙ୍କୁଶ ଆଦି ଅଷ୍ଟାଦଶ
ଚିହ୍ନ ପଙ୍କଁରେ ପ୍ରକାଶ ।
ଯାହାର ପରାଗ ରାଗରେ ଆବେଶ
ମୁକୁଟ କେଶାଦି ଶେଷ[1] ॥ ୨୮ ॥

ଦେଖି ଅଚତୁଷ୍ଟ ପ୍ରିୟ ସନ୍ତଚଷ୍ଟ
ନ ଜାଣିଲା ପ୍ରାୟେ ହୋଇ ।
ବୋଇଲେ ସଖି ଏ ଅବଶ୍ୟ ବନିତା
ଶିରୋମଣି ଅଛି ପାଇ ॥ ୨୯ ॥

ପଦେ ପଦକେ ଦେବକ ପ୍ରାୟେ ପଦ
ଚିହ୍ନରେ ଭୂଷଣ ହେଲା ।
ସର୍ବଂସହା କ୍ଳେଶ ତପସ୍ୟାର କୃଶ-
ସ୍ୱବର ଫଳ ପାଇଲା ॥ ୩୦ ॥

ଏହି ପ୍ରକାରେ ପରସ୍ପରେ କହନ୍ତେ
ଜାଣିଲେ ବୃଷ ଭାନୁଜା ।
ନେଇ ଅସିତ କମଳ ଦଳ ଜାଳ
ପକାଇ କଲେ ତା ପୂଜା ॥ ୩୧ ॥

ଦେଖି ଦେଖି ପ୍ରେମ ନଦୀ ଉଚ୍ଛୁଳିଲା
ପୁଲକ ସର୍ବାଙ୍ଗ ଦେଶ ।
ପଦାମ୍ବୁଜ ଦର- ଶନେ ଦ୍ରବ ହୋଇ-
ଗଲା ଚନ୍ଦ୍ରୋପଳ ଦୃଶ ॥ ୩୨ ॥

ଏହି ଅବସର ପାଇ ପଞ୍ଚଶର
ଲକ୍ଷ ଲକ୍ଷ୍ୟ କଲା ଆଣି ।
ବରଷିଲା ବର ଶିଳା ଧୃତ କଲା
ତରଳ କରକା ମଣି ॥ ୩୩ ॥

---

୧. କେଶ ଶେଷାଦି ମୁକୁଟ ( ପୋଥି ପାଠ )

ଅଶକତେ ତନୁ ଲତା ଭୂମି ଗତା
ହୁଅନ୍ତେ ନବ ନାଗରୀ ।
ଅବଲମ୍ବ କରି ସଖୀ ସାକ୍ଷୀ ହରି-
ଣାକ୍ଷୀ ବୋଲେ ହରି ହରି ॥ ୩୪ ॥

ଗୋବିନ୍ଦ ତନୁ ସୁନ୍ଦର ବୃନ୍ଦ ଆସି
ମନେ ପ୍ରବେଶ ହୋଇଲେ ।
ଗଦ ଗଦ କଣ୍ଠ ହୋଇ କଳକଣ୍ଠ
ବାଣୀ ସଖୀଙ୍କ କହିଲେ ॥ ୩୫ ॥

କିଶୋର କିଶୋରୀ ଗାନ୍ଧର୍ବୀ ମୁରାରି
ପାଦ ପଦ୍ମ ମନେ ଧରି ।
ପୁରୁଷୋତ୍ତମ ଅନଙ୍ଗ ଭୀମଦେବ
ଭଣିଲେ ନୃପ କେଶରୀ ॥ ୩୬ ॥

———

# ଚତୁର୍ଥ ଛାନ୍ଦ

ରାଗ—କନଡ଼ା

ଲଳିତା ପାଶରେ ପ୍ରେମ ଆବେଶରେ
କହନ୍ତି ସୁଲଳିତ ବାଣୀ ।
ଶୁଣ ଶୁଣ ରେ ପ୍ରାଣର ମିତଣି
କୃଷ୍ଣ ବିନା ମୋର ଜୀବନ ଅଥିର
କରେ ଫୁଲ ଧନୁ ପାଣିରେ । ସଙ୍ଗିନି ।
ଘନଶ୍ୟାମ ତନୁ ନେତ୍ର ବିଯୋଗ
ତ୍ରୁଟି ମାତ୍ର ହିଁ କୋଟି କୋଟି ଯୁଗ
ଅନେକ ଜନ୍ମର ସଞ୍ଚିତ ଅଦୃଷ୍ଟ
କଷ୍ଟ ହୋଏ ଯହିଁ ଭୋଗ ରେ । ସଙ୍ଗିନି ॥ ୧ ॥

ସଖି ସେ କଳା- ନିଧି ରୂପ ଦର୍ଶନେ
ସତ୍ତ୍ୱ ଧୃତି କାହିଁ ରହିବ ।
× × ×
ମାନସ ଚକୋର ପ୍ରମୋଦ ସାଗର
ଯହିଁ ମାନ ଚନ୍ଦ୍ରଭାବ ରେ । ସଙ୍ଗିନି ।
କ୍ଷଣମାତ୍ର ହିଁ କୃଷ୍ଣ ସଙ୍ଗ ଭଙ୍ଗ
ହେଲେ କ୍ଷମା ନ କରଇ ଅନଙ୍ଗ
ଜୀବନ ଯୌବନ- ହୀନ ମନ ପ୍ରାଏ
କରି ଦହଇ ମୋ ଅଙ୍ଗ ରେ । ସଙ୍ଗିନି ॥ ୨ ॥

ମୋହ ମନେ (ପୁଣ) ବିସ୍ମରଇ ପ୍ରିୟ
ଦର୍ଶନେ ନୋହିବ କାତର ।
କୃଷ୍ଣ ନ ଜାଣିମେ ମୋର ଆତୁର
ପ୍ରବୋଧେ ସ୍ୱପ୍ନ ମନୋରଥ ପରାପ୍ତେ
ସଙ୍ଗମେ ସବୁ ବିସ୍ମର ରେ । ସଙ୍ଗିନି ।
ସ୍ମିତ ମିଶ୍ରିତ ବକ୍ର ନେତ୍ରାନ୍ତର
ପରସ୍ପରେ ହେବ ଯାଇ ଅନ୍ତର
ଗିରି ଭେଦି କାଣ୍ଡ ନବନୀତ ପିଣ୍ଡ
ଭେଦନେ କି ପ୍ରତିକାର ରେ । ସଙ୍ଗିନି ॥ ୩ ॥

ଦୃଷ୍ଟି ସଂଯୋଗ ବିକାର ପ୍ରତିକାର
କରିଥାଇ ପାଦେ ନୟନ ।
ମୁଖ ସମ୍ମୁଖକୁ ଅଧୋବଦନ
ବାଣୀ ଶୁଣି ସପୁଲକିତ ଗଣ୍ଡକୁ
କରେ କରି ନିରୋଧନ ରେ । ସଙ୍ଗିନି ।
ତଥାପି ହ୍ରି ନିକଟ ହେଲେ ଶାମ
କି କି ଘଟିବ ପ୍ରକଟେ ଚିତ୍ତେ କାମ
କୁଚ କଞ୍ଚୁକି ଶିଥିଳ ବିଦାରିତ
ହେଲେ କି ଆଉ ଉଦ୍ୟମ ରେ । ସଙ୍ଗିନି ॥ ୪ ॥

ସମାଗମରେ ଧୃତି ଭଙ୍ଗ ଭୟରୁ
କରିଥାଇ ମୁଁ ଚିତ୍ତ ସ୍ଥିର ।
କାନ୍ତ ହୋଇଲେ ହେ କାମେ ସତ୍ୱର
ପାବକ ସଂଯୋଗେ ଜତୁ ପିଣ୍ଡ ପ୍ରାଏ
ସ୍ମରଣେ ହୃଦୟାନ୍ତର ରେ । ସଙ୍ଗିନି ।
ଘନଶ୍ୟାମ ସୁନ୍ଦର ଅବଲୋକ ।
ହରେ କଞ୍ଚିତେ ଚିତ୍ତରୁ ବିବେକ
ସମ୍ବର ଭେଶୀ ଶାଳି ଅନ୍ନ ଦେଖି
ଯେସନ ମନ ଉଚ୍ଛୁକ ରେ । ସଙ୍ଗିନି ॥ ୫ ॥

ରବି ବଧୂ ମଧୂ ସ୍ୱଭାବରେ ସାଧୁ-
ଗୁଣେ ପ୍ରକାଶେ ନିଜ କୁଳ ।
କଣ୍ଡ୍ରି କୁମୁଦ ସୁମଣି ବକୁଳ
ପ୍ରଫୁଲ୍ଲ ଉଦ୍ଦୀପନ ଦ୍ରବ ଉଦ୍‌ଗମ
ଯେ ଯାହା ଘଟେ କୁଶଳ ରେ । ସଙ୍ଗିନି ।
ଦେଖ ଅପୂର୍ବ ଏ ବିଧି ବିଧାନ
କୃଷ୍ଣଚନ୍ଦ୍ରେ ସର୍ବଗୁଣ ନିଧାନ
ଅବଲୋକନ ମାତ୍ରେ ଅଙ୍ଗେ ପ୍ରକଟେ
ସମସ୍ତ ବିକାର ଗୁଣ ରେ । ସଙ୍ଗିନି ॥ ୬ ॥

ରବିକରେ କଞ୍ଜ- ପ୍ରାପ୍ତେ ମୁଖାମ୍ବୁଜ
ନେତ୍ର ଚନ୍ଦ୍ରୋପଳ ପ୍ରକାର ।
ଧନମଣି ମଣି କାମ ବିକାର ।
ଚନ୍ଦ୍ରେ କଇରବ ପ୍ରାପ୍ତେ ଶତ୍ରୁଭାବ
ପୁଲକରୁ ଭୁ ଅଙ୍କୁର ରେ । ସଙ୍ଗିନି ।
ନିକଟରେ ପ୍ରକାଶେ ଏତେ ଗୁଣ ।
ବାଣୀ ଶ୍ରବଣେ କୋଟି କୋଟି ପୁଣ ।
ସ୍ମରଣେ ଆନନ୍ଦ ସୁଧା ସିନ୍ଧୁ ମଗ୍ନ
ହେଲେ କେ କରୁ ପ୍ରମାଣ ରେ । ସଙ୍ଗିନି ॥ ୭ ॥

ପ୍ରଫୁଲ୍ଲ କମଳ- ଦଳ ଜାଳ ମୀନ
ଉତ୍ପଳ ଚକୋର ପ୍ରତିଭା ।
ମୃଗ ଖଞ୍ଜନ ନୟନର ଶୋଭା ।
ପ୍ରତିରୂପ ନୋହି ବନାନ୍ତରେ ରହି
ଲୁଚ୍ଛଇଲେ ନିଜ ପ୍ରଭା ରେ । ସଙ୍ଗିନି ।
ଇନ୍ଦ୍ରନୀଳମଣି ହେବ ସଜୀବ ।
ମୃଗମଦ ତରଙ୍ଗରେ ମଜ୍ଜିବ ।
ନେତ୍ରକୁ ଉପମା ଦେବା ଯେବେ କଷ୍ଟ
ଅନ୍ତେ ଅନୁରାଗ ଥିବ ରେ । ସଙ୍ଗିନି ॥ ୮ ॥

କୃଷ୍ଣ ନେତ୍ର ଅନ୍ତ କୁନ୍ତକୁ ଶକୁନ୍ତ
ପରାପ୍ତେ ଯୁବତୀ ହୃଦୟ ।
ସରଧା ଶର- ଘାତର ପାତ୍ର ହୋଇ
ହୋଇବ କାହିଁ ନିର୍ଭୟ ରେ । ସଙ୍ଗିନି ।
ନେତ୍ର ପତନ ପାତ୍ର ଯାହା ଗାତ୍ର ।
ହେବ ହେଲେ ହେ ଏକ ଶୀଳ ଗୋତ୍ର ।
କାମେ ହେବ ଦ୍ରବ ଯେହ୍ନେ ଚନ୍ଦ୍ରକର
କରରେ ନବନୀତ ପାତ୍ର ରେ । ସଙ୍ଗିନି ॥ ୯ ॥

ସହଜ ରଙ୍ଗ ଅପାଙ୍ଗ ସୁରଙ୍ଗିମା
ଅଧର ସ୍ମିତରେ କଳିତ ।
ସ୍ୱଭାବରେ ଅନୁରାଗେ ବଳିତ ।
ଚଞ୍ଚଳ ଚିଲ୍ଲୀ[୧] କୁଟିଳ ଭାବ ଯେନ
ଅଙ୍ଗେ ପଡ଼ିଲେ କଞ୍ଚିତ ରେ । ସଙ୍ଗିନ ।
ନବ ତରୁଣୀ ହୃଦୟ କମଳ ।
ନିରନ୍ତରେ ପ୍ରେମରସେ କୋମଳ ।
ତାହାର କି ଗତି ପହିଁ ଫୁଟେ କୋଟି
କୋଟି ପତିବ୍ରତ ଶୀଳ ରେ । ସଙ୍ଗିନ ॥ ୧୦ ॥

ପ୍ରିୟ ସଙ୍ଗମ ସଙ୍ଗ ମନରେ ଯେତେ
ମନ୍ମଥ ମନୋରଥ କରି
ନାନାରସ ରତିରଙ୍ଗ ବିସ୍ତରି ।
ରସିକ ବନ୍ଧୁ ରସ ସିନ୍ଧୁ ନିମଗ୍ନ
ହେଲେ ତା ସବୁ ପାଶୋରି ରେ । ସଙ୍ଗିନ ।
କୃଷ୍ଣ ରତି(କେଳି) କଳା ଚତୁରି
ନ କରିବ କାମନା କରି[୨] ନାରୀ ।
ମନ ମନମଥ ମଥନ କରଇ
ମନରେ କାହା ବିସ୍ତରିରେ । ସଙ୍ଗିନ ॥ ୧୧ ॥

ସର୍ବାଙ୍ଗ ଲାବଣ୍ୟ ସାର ସଂଗ୍ରହଣେ
ସାହସ କଲେ ମୋର ନେନେ ।
ଯାଇ ପଡ଼ିଲେ ଘନଶାମ ଗାନେ ।
ଏକ ଅଙ୍ଗ ଶୋଭା ଲେଶରେ ମଜ୍ଜିଲେ
ଯେହ୍ନେ ମକ୍ଷି ମଧୁ ପାନେ ରେ । ସଙ୍ଗିନ ।
ଆତ୍ମାରାମ କାମନା ପ୍ରାପ୍ତେ ହୋଇ
ଅକ୍ଷି ଯୋଗ୍ୟ ଅଖିଳରେ ନ ପାଇ ।
ଏକ ଅଙ୍ଗ ଲାବଣ୍ୟରେ ନିମଜ୍ଜିଲେ
ଅପର ଅଙ୍ଗ ନ ଯାଇ ରେ । ସଙ୍ଗିନ ॥ ୧୨ ॥

---

୧. ଚିଲ୍ଲୀ = ଭ୍ରୂଲତା
୨. କାମ ନାକରୁ ( ପୋଥି ପାଠ )

କୃଷ୍ଣାନନ୍ଦ କନ୍ଦ ନୟନ ଆଣି ମୋ
ହୃଦୟ ଦେଶେ ଲଗାଇଲା
ସ୍ନେହ ନୀର ନିରନ୍ତେ ମନ ଦେଲା ।
ପ୍ରେମ ଅଙ୍କୁର ହୋଇ ଭାବ ପଲ୍ଲବ
ସର୍ବାଙ୍ଗ ଯାକ ଘୋଟିଲା ରେ । ସଙ୍ଗିନି ।
ପୁଣି ଅନଙ୍ଗ ଅଙ୍ଗବାଟୀପାଳ
ଯତ୍ନେ କଲା ତା ବକୁଳ ସକୁଳ ।
ପରମାନନ୍ଦ ମଧୁର ଫଳ ଭୋଗ
କଲେ ମୋ ଇନ୍ଦ୍ରିୟ କୁଳ ରେ । ସଙ୍ଗିନି ॥ ୧୩ ॥

ବହ୍ନି ବହ୍ନିତ ଜଗତରୁ ଅତୀତ
ନନ୍ଦ ନନ୍ଦନ ଅଙ୍ଗ ଶୋଭା
ଚନ୍ଦ୍ରପ୍ରଭା ବଳିତ ଘନ ଆଭା ।
ଦର୍ଶନେ ସମ୍ଭୋଗ ତୃଷ୍ଣାରେ ଝଟିତ
ଚତ୍ତ ନେତ୍ର କରେ ଲୋଭ ରେ । ସଙ୍ଗିନି ।
ଚୁମ୍ବୁଁ ଚୁମ୍ବୁଁ ଅନଙ୍ଗ ସର୍ବ ଅଙ୍ଗ
ଘୋଟି ବଢ଼ାଇ ଅନଙ୍ଗ ତରଙ୍ଗ ।
ଜୀବନ ଭାବ ଭାବନାରେ କରଇ
ପରମାନନ୍ଦରେ ସଙ୍ଗ ରେ । ସଙ୍ଗିନି ॥ ୧୪ ॥

କୋଟିଏ କୋଟି ଅନଙ୍ଗ ଅଙ୍ଗଧର
ହୋଇ ଅଇଲେ ଏକ କାଳ
ନମସ୍କାଇ ଯାହାର ପାଦ ତଳ ।
ଅଶେଷ ବ୍ରହ୍ମାଣ୍ଡ ମଣ୍ଡଳ ସକଳ
ସୁନ୍ଦର ଯହିଁରେ ମେଳ ରେ । ସଙ୍ଗିନି ।
ସେହି ରୂପେ ମୋ ହୃଦୟ କମଳେ ।
ଭାବ ନିର୍ମଳ ସ୍ଫଟିକ ଶକଳେ ।
ସ୍ମରଣ ମାତ୍ରେ ଝଟିତ ଉକଟିତ
ବହୁ ଜନ୍ମ ପୁଣ୍ୟଫଳ ରେ । ସଙ୍ଗିନି । ୧୫ ॥

ଘନଶାମ ଘନ କୁଟିଳ କୁନ୍ତଳ
ଚୂଳରେ ମଣ୍ଡିତ ଶିଖଣ୍ଡ
ତହିଁ ଗୁଞ୍ଜୁରି ଗୁଞ୍ଜଫଳ ଝୁଣ୍ଡ ।
ମହା ମରକତ ଶମ୍ଭୂ ସମ୍ବଳିତ
ହେମ ଗୃଦ୍ର ଚନ୍ଦ୍ର ଖଣ୍ଡ ରେ । ସଙ୍ଗିନ ।
କି ସେ ସକଳ କଳା ନିକୁରମ୍ବ
ଏକ ସ୍ଥଳ ସର୍ବଶୋଭ କଦମ୍ବ ।
ଅଞ୍ଜନ ଗିରି ରଞ୍ଜନ କଲା କି
ସେ ସନ୍ଧ୍ୟାରାଗୀ ଚନ୍ଦ୍ରବମ୍ବ ରେ । ସଙ୍ଗିନ ॥ ୧୬ ॥

ଘଟଣ ଘନ— ରସ[୧] ଆଦରଣରେ
ପ୍ରତିଫଳେ ଇନ୍ଦ୍ର କୋଦଣ୍ଡ
ସ୍ମିତ ଅଧର ସମ୍ବଳିତ ଗଣ୍ଡ ।
ସ୍ମର ହର ଚାପ ଭପ୍ୟେ ସୁଧା ସିନ୍ଧୁ
ମଗ୍ନ କି କୁସୁମ କାଣ୍ଡ ରେ । ସଙ୍ଗିନ ।
ପୁଣି ମଣି ମକରାକାର ଶୋଭା
ପ୍ରତିବିମ୍ବିତ କୁଣ୍ଡଳ ପ୍ରଭା ।
ନିର୍ମଳ ନଭ ମଣ୍ଡଳେ କପ୍ୟେ ଗୁରୁ
କବି ବେନି ବେନି ପ୍ରଭା ରେ । ସଙ୍ଗିନ ॥ ୧୭ ॥

ପ୍ରଫୁଲ୍ଲ ମୀନ ନଳିନ ଉପରେ କି
ଶ୍ରେଣୀଭୂତ ଅଳି କଦମ୍ବ
ଚନ୍ଦ୍ରେ ସ୍ୱର୍ଭାନୁ ଦନ୍ତ ନିକୁରମ୍ବ
ଚୂର୍ଣ୍ଣ କୁନ୍ତଳ ବେଷ୍ଟିତ ଭାଲ ମାରି
ମର୍କତ ମୁକୁର ବିମ୍ବ ରେ । ସଙ୍ଗିନ ।
କି ସେ ଅପୂର୍ବ ମଦନ କମାଣ ।
ଭ୍ରୁରୁ ଲତାରେ ସାଜିଅଛି ଗୁଣ ।
ଅପାଙ୍ଗ କାମ କାଣ୍ଡକୁ ଲକ୍ଷ୍ୟକରି
ଯୁବା ଯୁବତୀଙ୍କ ପ୍ରାଣ ରେ । ସଙ୍ଗିନ ॥ ୧୮ ॥

---

୧. ଝଷ ( ପୋଥି ପାଠ )

ପ୍ରଚୁର ରଙ୍ଗ ଅନୁରାଗେ ବଳିତ
ସିତେ ପ୍ରକଟିତ ପ୍ରତିଭା
ଶୋଣ ରୁଚ ଅଧର ବିମ୍ବ ଶୋଭା ।
ନିର୍ମଳ କାଳିନ୍ଦୀ— ଜଳ ପୂରେ କସେ
ପ୍ରବାଳ ତରଣି ଆଭା ରେ । ସଙ୍ଗିନି ।
ବନ୍ଧୁ ଜୀବଜିତ ବଧୂ ଜୀବନ
ଯାହା ଦର୍ଶନେ ମଦନ ଦହନ ।
ଦହଇ କୃପୀଟ- ଯୋନି[1] ତୁଳା କୂଟ
ପ୍ରାଏ ତରୁଣୀ ଜୀବନ ରେ । ସଙ୍ଗିନି ॥ ୧୯ ॥

କମ୍ବୁ ତ୍ରିବଳୟ ଜିତ ସୁବଳୟ
କୁବଳୟ ଫଳ ଘଟିତ
ଦିବ୍ୟ ମଣି ଦାମ ଶ୍ରେଣୀ ବେଷ୍ଟିତ ।
ସପତ ରାଗ ସପତ ଦେଇ ତନ୍ତ୍ରୀଁ
ବାନ୍ଧିଲି କି ରତ୍ନକାନ୍ତ ରେ । ସଙ୍ଗିନି ।
ଏକ କଳ ଲୁବ୍ଧଇ କଳକଣ୍ଠ ।
ଏଣୁ ଲଜେ ନୋହିଲି ଅତ ସ୍ଫୁଟ ।
ପଞ୍ଚମ ବଞ୍ଚନା କଲେ ହେ ମୁରଲୀ
ନାଦ କଲି କଣ୍ଠ କୁଣ୍ଠ ରେ । ସଙ୍ଗିନି ॥ ୨୦ ॥

ଇନ୍ଦ୍ର ନୀଳମଣି କପାଟ ପ୍ରସାର
ହର ସୁନ୍ଦର ଉର ପ୍ରଭା ।
ତନ୍ନପୁର ସମସ୍ତ ଶୋଭା ସଭା ।
ଶ୍ରୀବତ୍ସଙ୍କ ହାର କଉସ୍ତୁଭ ରତ୍ନେ
ରତ୍ନ[2] ତାର ତର ଆଭା ରେ । ସଙ୍ଗିନି ।
ମାର ଶର ତକ୍ଷଣ କର ଶାଣ ।
ଚିତ୍ତ ପାତ ଶୀଳ କଲି ମଦନ ।
କି ଅବା ସଙ୍ଘ ଯୁବତୀ ମନ ଲୋହ
ଆକରଷଣ ପାଷାଣ ରେ । ସଙ୍ଗିନି ॥ ୨୧ ॥

୧. କୃପୀଟ ଯୋନି = ଅଗ୍ନି
୨. ରତ୍ନ ( ପୋଥି ପାଠ )

ମହା ମରକତ ସ୍ତମ୍ଭ ଦମ୍ଭ ହାରି
ଶୁଣ୍ଡ ଦଣ୍ଡନ ଭୁଜ ଦଣ୍ଡ ।
ତହିଁ ଚନ୍ଦ୍ର କର୍ପୂରିତନ ଶ୍ରୀଖଣ୍ଡ ।
ଲେପନ ଗୋପ- ନାଗରୀ ଆଲିଙ୍ଗନେ
କୃତାର୍ଥ କରନ୍ତି ପିଣ୍ଡ ରେ । ସଙ୍ଗିନ ।
କର ଯୁଗଳ ରକତ; ମୃଣାଳୀ ।
ତହିଁ ଶୋଭା ପଞ୍ଚ ପଞ୍ଚ ଅଙ୍ଗୁଳି ।
ମନୋଜ ବଜ୍ର ନଖ ମୂନ ଦ୍ୱିଗୁଣ
ବାଣେ ଜିଣିମ କ ଶୂଳ ରେ । ସଙ୍ଗିନ ॥ ୨୨ ॥

ନାଭି ସରସିଜ ହୃଦସ୍ଥ ପଙ୍କଜ
ଆଲମ୍ବି କୃଷ୍ଣ ରୋମାବଳୀ ।
ବେଦ କମଣ୍ଡଳୁ ନିର୍ଗତ ଭୃଙ୍ଗାଳି ।
ସୁଧା ଆଳ ବାଳ ପ୍ରେମ ଜାଳ ମୂଳ
କି ସେ କାମାଙ୍କୁର ବଲ୍ଲୀ ରେ । ସଙ୍ଗିନ ।
କି ବା ଅଙ୍ଗ ବିଭାଗ କୃଷ୍ଣ ସୂତ୍ର ।
କାମ ଶାମ ଭୁଜଙ୍ଗ ଊର୍ଦ୍ଧ୍ୱ ଗାତ୍ର ।
କି ଅବା ମାର ଅନ୍ଧାର ହରପର
ପ୍ରଭା ଦୀପଶିଖା ମାତ୍ର ରେ । ସଙ୍ଗିନ ॥ ୨୩ ॥

ଲଗ୍ନ ଅଲଗ୍ନ ଫଣସ୍ଥ ଅବଲଗ୍ନ
ଦର୍ଶନେ ଲଗ୍ନ କରେ ଚିତ୍ତ ।
ଚନ୍ଦ୍ରଶେଖର ବାଦ୍ୟ ମଧ୍ୟଜାତ ।
କେବଳ କର୍ଷୀ ସୂତ୍ର ଗାତ୍ର ବିଭାଗ
ତୁଳନା କାରଣେ ସ୍ଥିତ ରେ । ସଙ୍ଗିନ ।
ବନ୍ଧ ହୋଇ କେ ଏମନ୍ତ ସୁନ୍ଦର ।
ହେବ ହେତୁ ହୃଦାନନ୍ଦ ସୁନ୍ଦରୀ ।
ଏକା ସେହି ଅଙ୍ଗ ଅପୂର୍ବ ସୁଷମା
ନେହାନ୍ତ କଟିକନ୍ଦର ରେ । ସଙ୍ଗିନ ॥ ୨୪ ॥

ନିତମ୍ବ ବିମ୍ବ ଆଲମ୍ବ ସମ୍ବଳିତ
ନଟ ଛନ୍ଦ ଗ୍ରନ୍ଥି ପ୍ରଲମ୍ବ ।
ଧଟୀ ଘଟିତ ପଟ ହେମ ବିମ୍ବ ।
ନୟନ ଅୟନେ ଚଣି ଧ୍ୱଂସ କରେ
ଯୁବତୀ ହୃଦୟ ଦମ୍ଭ ରେ । ସଙ୍ଗିନି ।
କି କହିବା ସେ ପୀତାମ୍ବର ଶୋଭା ।
ଯାହା ଯୋଗରୁ ପୀତାମ୍ବର ପ୍ରଭା ।
ଯୋଗୀ ଜନ ମନ ଧ୍ୟାନ ଧାରଣା ଯେ
କାମିନୀ ମାନସ ଲୋଭ ରେ । ସଙ୍ଗିନି ॥ ୨୫ ॥

ମରକତ ରମ୍ଭା ତରୁ ସମ୍ଭାବନା
ଭାବନେ ବିପଶ୍ଚିତ ମନ ।
ହର ନ ଗଣି ସ୍ତମ୍ଭ ଦମ୍ଭ ନାଶନ ।
ଉରୁ ପୀତାମ୍ବର ସଂଭୃତ ସମ୍ବର
ପର ପରମାଲମ୍ବନ ରେ । ସଙ୍ଗିନି ।
ଅପ୍ରକଟ ବନ୍ଧୁର ଜାନୁଦେଶ ।
ଜଂଘା ନାଳ ମୂଳ ପଦ ସାରସ ।
ଯହୁଁ ଆନନ୍ଦ- କନ୍ଦ ସୁଖ ଲଭନ୍ତି
ତରୁଣୀ ମାନସ ହଂସ ରେ । ସଙ୍ଗିନି ॥ ୨୬ ॥

ଇନ୍ଦ୍ର ନୀଳମଣି ଘଟିତ ନଳିନୀ
ପଦ୍ମ ରାଗ ଗର୍ବ ହୋଇବ ।
ବଜ୍ର ଖଣ୍ଡ ଶ୍ରେଣୀ ଅଗ୍ରେ ରହିବ ।
ତରଣି ମିତ୍ର ଧରଣୀ ଜାତ ରାଗ
ଦିନ ଧର୍ମ ନ ବହିବ ରେ । ସଙ୍ଗିନି ।
ତଥାପି ହି ପାଦ ଶୋଭା ଲେଶକୁ ।
ଯମ ନୋହି ମଞ୍ଜୀର[୧] ବେଶକୁ ।
କେବଳ ଉପମା କରି ଅଳଙ୍କାର
ଅନୁପମିତ ଦୋଷକୁ ରେ । ସଙ୍ଗିନି ॥ ୨୭ ॥

---

୧. ମଞ୍ଜୀର = ନୂପୁର

ଏହି ଭାବରେ ଭାବବତୀ ଭାବିନୀ
ଭାବନିଧି ଭାବ ଭାବନା ।
ମନେ ଘେନି ମନମଥ ବେଦନା ।
ବଣରେ ଲଳିତା କରେ କର ଦେଇ
କରେ ଦୁଃଖ ନିବେଦନା ରେ । ସଙ୍ଗିନି ।
କାନ୍ତ ,ମୁଖ ନିଶାକାନ୍ତ ଦର୍ଶନ ।
ଆସେ ନେତ୍ର ଚକୋରେ ଥୋଇ ପ୍ରାଣ ।
ଅଛନ୍ତି ଉଦୟ ହେଲେ ସେ ହୃଦୟୁ
ଦୁଃଖ ହେବ ପରିହାଣ ରେ । ସଙ୍ଗିନି ॥ ୨୮ ॥

ରାଧା ପ୍ରେମ ବାଣୀ ଶୁଣି ଜାଣୁମଣି[୧]
ଲଳିତା ସଖୀ ଅନୁରାଗେ ।
ଭାବେ କହିଲେ ପ୍ରାଣ ସଖୀ ଆଗେ ।
ତୁମ୍ଭ ପୀରତି ରତିପତି ଖ୍ୟାତିରୁ
ଗୋବିନ୍ଦ ମିଳିବେ ଲଗେ ରେ । ସଙ୍ଗିନି ।
ଗଙ୍ଗବଂଶ ପୟୋଧି ସୁଧାକର ।
ପୁରୁଷୋତ୍ତମ ଦେବ ନୃପବର ।
ରାଧାକୃଷ୍ଣ ଭାବ କରି ଭାବନାବ
ଭଣିଲେ ଏ ରସ ସାର ରେ । ସଙ୍ଗିନି ॥ ୨୯ ॥

---

୧. ଜାଣୁମଣି = ଚରୁଣ

# ପଞ୍ଚମ ଛାନ୍ଦ

ରାଗ—କେଦାର କାମୋଦୀ

କୁନ୍ଦ କୁଞ୍ଜରେ କୁନ୍ଦ ବର୍ଣ୍ଣୀକ ଦେଖି
କୁନ୍ଦ କୁଟ୍ମଳ ମାଳା ଗଳାରେ ରଖି ରେ ।
କନ୍ଦର୍ପ କୃଷ୍ଣ କାମେ ପ୍ରିୟା ସୁମର
କୁନ୍ଦରଦନା ମାର ବେଦନା ହାର ରେ ॥ ୧ ॥

କଳାକରେ ଚକୋର ଘନେ ଚାତକ[1]
ମଧୁ ନବ ମଞ୍ଜରୀ ରସାଳେ ପିକ ରେ ।
ଏହି ପ୍ରକାରେ ମନ ଅନବରତେ
ଉହିଲା ପ୍ରାଣବନ୍ଧୁର ଆସିବା ପଥେ ରେ ॥ ୨ ॥

ଅଛିଦ୍ର ହେମ ଗିରି ଉରଜ ଦେଶ
ସୂକ୍ଷ୍ମ ଛିଦ୍ରରୁ ମନ ହେଲା ପ୍ରବେଶ ରେ ।
ଲାବଣ୍ୟ ସୁଧାପାନେ ଭ୍ରଷ୍ଟ ହୋଇଲା
ତେଣୁ ନଇଲା ଯତ୍ନେ ବାଟ ନୋହିଲା ରେ ॥ ୩ ॥

ଆନ ଦେଖିବା ନ ଦେଖଇ ନୟନ
ଯେଣୁ ତାହାର ଜ୍ଞାନ କାରଣ ମନ ରେ ।
ଶୁଣି ରମଣୀ ବାଣୀ ସୁଧା ସରଣୀ
ଶ୍ରୁତି ପ୍ରୀତି ନ କଲା ଅଖିଳ ବାଣୀ ରେ ॥ ୪ ॥

ଗାନ୍ଧର୍ବା ଗନ୍ଧ ଗୁଣ ଛୁଇଁ ମୋ ନାସା
ଛାଡ଼ିଲା ଗନ୍ଧବତୀ ଗନ୍ଧରେ ଆଶା ରେ ।
ତନୁ ମଣିଲା ତନୁ କର ଆଶ୍ଳେଷ
ବହୁ ବହିତ ଶିତ କୋମଳ ବେଷ ରେ ॥ ୫ ॥

ପ୍ରିୟା ସକଳ ଅଙ୍ଗ ଲାବଣ୍ୟ ସାର
ସେବନ୍ତି ଏକାବେଳେ ନୟନ ମୋର ରେ ।
ମଧୁପାଟଣୀ ମଧୁକରୀ ତରପ୍ସେ
ମୋ ଚକ୍ଷୁ ରସଭକ୍ଷୁ ଆନନ୍ଦ ହୋଏ ରେ ॥ ୬ ॥

---

୧. 'ଚାତକ' ପରେ ପୋଥିରେ "ବସନ୍ତରେ ନବ ବକୁଳ ଆମ୍ରରେ ଏ ଟୀକା" ଅଛି ।
୨. ଦ୍ବିତୀୟ ପଦର ଶେଷପାଦ ପରେ "ନତ ଉନ୍ନତ ମାର୍ଗେ ଅନା ଗମନେ ହେରୁ ରେ" ( ପୋଥି ପାଠ ) ଅଛି ।

ମଧୁ ଫଣାରେ ମଧୁ କାଠ ପ୍ରବେଶ
 ମଧୁକର ମାଳତୀ ପୀରତି ରସ ରେ ।
ଚକୋର ସୁଧାପାନ ମନରେ କଲା
 ଅଧରପାନେ ଏକସ୍ଥାନେ ପାଇଲା ରେ ॥ ୭ ॥

ବିମ୍ବ ଅରୁଣବନ୍ଧୁ ଜୀବ ପ୍ରବାଳ
 ସୁ ଚନ୍ଦୁ ରାଗ ଜବା କୁସୁମ ଜାଳ ରେ ।
ଏ ମାନ ବର୍ଣ୍ଣି ରଙ୍ଗ ଭ୍ରମ ପ୍ରକାର
 ପାନେ ଜାଣିଲା ସୁଧା ବିମ୍ବ ଅଧର ରେ ॥ ୮ ॥

ଲାବଣ୍ୟ ସୁଧାପାନ ନୟନ ଦ୍ୱାରେ
 ପିକ ସ୍ୱନ ମାଧୁରୀ କର୍ଣ୍ଣ ପୁଟରେ ରେ ।
ଅଧର ମଧୁପାନେ ସାକ୍ଷୀ ଅଧର
 ସର୍ବ ରସ ଆସ୍ୱାଦେ ଚିତ୍ତ ଆଧାର ରେ ॥ ୯ ॥

ପ୍ରେମ କୁତୁକେ ମନେ ବିଗୁରୁଥାଇ
 ପଶରନ୍ଧ୍ରରେ ଦମ୍ଭ ଛାଡ଼ିବ ନାହିଁ ରେ ।
ଚନ୍ଦ୍ର ମଣ୍ଡଳେ ଚନ୍ଦ୍ରୋପଳ ଯେସନ
 ଚନ୍ଦ୍ରମୁଖୀ ଦର୍ଶନେ ଦ୍ରବଇ ମନ ରେ ॥ ୧୦ ॥

ରବିକରେ ପ୍ରଫୁଲ୍ଲ ନୋହିବ କଞ୍ଜ
 ଚନ୍ଦ୍ରକର ନିକରେ କୁମୁଦ ବ୍ରଜ ରେ ।
ସ୍ଥିର ହୋଇବ ବିଧୁ ଦର୍ଶନେ ସିନ୍ଧୁ
 ତଥାପି ଚିତ୍ତ ଦ୍ରବ କରିବ ବନ୍ଧୁ ରେ ॥ ୧୧ ॥

ସୁଧାପାନରେ ସୁଧାକର ହି କ୍ଷୀଣ
 ସନ୍ତତ ମଧୁର ସେ ଅରୋଚ ମନ ରେ ।
ଅପୂର୍ବ ସୁଧା ଧର ପ୍ରିୟା ଅଧର
 ପାନେ ବେଳକୁ ବେଳ ଅତି ମଧୁର ରେ ॥ ୧୨ ॥

ସୁଧା ପାନ କରିବା ନୟନ ଦ୍ୱାରେ
 ପରମାନନ୍ଦ ମନ ଅନୁଭବରେ ରେ ।
ପ୍ରେମ ପ୍ରତିମା ମନ୍ଦ ହସିଲ ହୋଇ
 ନେତ୍ର ଅନ୍ତେ ଅନାନ୍ତେ ସେ ସୁଖ ପାଇ ରେ[1] ॥ ୧୩ ॥

---

୧. ୧୩ଶ ପଦ ପରେ 'ସେ ସୁଖକରେ ନେତ୍ର ଅନ୍ତେ ଅନାଇଁ' ଅଛି ।

ଆଲିଙ୍ଗନରେ ଅଙ୍ଗେ ଅଙ୍ଗ ଲଗାଇ
ପାଇ ସେ ଆହ୍ଲାଦ ମନେ କରଇ ରେ ।
ଶଶାଙ୍କ ପଙ୍କ ଜାଳ ଚନ୍ଦ୍ର ବଦନ
ଏହାର ତଳ ସବୁ ଶୀତଳ ମାନ ରେ ।। ୧୪ ।।

ବାଳମୃଗୀ ଚକୋର ମୀନ ଉତ୍ପଳ
କଞ୍ଜଗତ ଖଞ୍ଜନ କମଳ ଦଳ ରେ ।
ନେତ୍ର ଉପମା ମାତ୍ର ପାତ୍ର ନୋହିଲେ
ଆକାର ଚଡୁଆଇ ଚନ୍ତ ଦହିଲେ ରେ ।। ୧୫ ।।

ହଂସୂଳ ତୂଳୀପରେ ଶିଶ୍ରଷ ଦଳ
ଶଯ୍ୟା ବାଧଇ ତନୁ ଏତେ କୋମଳ ରେ ।
ଏମନ୍ତ ହେଲେ ମାର ସମରେ ସଖି
ଉତ୍କରେ କଞ୍ଜିମା ପରାପ୍ତେ ସୁଖୀ ରେ ।। ୧୬ ।।

ଦୋଷ ମୋହର ଶୁଣି ରମଣୀମଣି
ବନ୍ଧୁ ବଳପ୍ତେ ବାଣୀ ଗୋଟିଏ ଭଣି ରେ ।
ଛଳ ସନ୍ଦର୍ଭ ରସ ଗର୍ଭ ଗୃଦ୍ଧୁଶ୍ର
ନଗର୍ଭ ଭାବ ତାର ଜାଣି ନ ପାରି ରେ ।। ୧୭ ।।

ମୃଦୁ ମଧୁର ମନ୍ଦସ୍ମିତ ଆକାରୁ
ଲକ୍ଷିଲେ ଅନୁମନ୍ତ କାମ ବିକାରୁ ରେ ।
ଅଦୃଷ୍ଟ ତରଙ୍ଗିଣୀ ଜଳ ପରାପ୍ତେ
ତଥାପି ହି ଲଂଘନେ ଭରସା ନୋହେ ରେ ।। ୧୮ ।।

ବନ୍ଧୁ ନେତେ ନ ପଡ଼ ଦେଖିବା ଶୋଭା
ମତେ ନ ଦେଖି ହୋଇଥିବ ସେ ଉଭା ରେ ।
ଏ ଘେନ ଅଲକ୍ଷିତେ କୁଞ୍ଜରେ ଥାଇ
କର୍ଣ୍ଣ ନୟନେ ସୁଧା ପାନ କରଇ ରେ ।। ୧୯ ।।

ବନ୍ଧୁ ଗୁଣ ରାଗରେ ନ ଜାଣି ବାଣୀ
ବକ୍ଷ ବହ୍ଲ ନାମ ପରିବାଦିନୀ ରେ ।
ପୁଣି ପଞ୍ଚମ ସ୍ୱର ଅନୁରାଗରେ
ଦେଲା ସେ କଳକଣ୍ଠ କଣ୍ଠ ଆଦ୍ୟରେ ରେ ।। ୨୦ ।।

ଦଳିତ ହରିତାଳ ହେମ ଚମ୍ପକ
ନବ ଗୋରଚନା ସ୍ୱର୍ଣ୍ଣ କେତକ ରେ ।
ଏମାନ ରୂପ ଅନୁରୂପ କରନ୍ତ
ଦଧି ଚନ୍ଦ୍ର ପରାୟେ କେବଳ କାନ୍ତି ରେ ।। ୨୧ ।।

ବନ୍ଧୁ ଦଧି ଭଜନ୍ତୁ ଲବଣୀ ତୋଳ
କାଞ୍ଚନ ରସେ ପରମାନନ୍ଦରେ ଗୋଳ ରେ
କୁଞ୍ଜ ପ୍ରବେଶ ହେଲେ ଜୀବନ ବନ୍ଧୁ
ସେହି ପ୍ରକାରେ ବଢ଼େ ଆନନ୍ଦ ସିନ୍ଧୁ ରେ ।। ୨୨ ।।

ରସାଳ ବନୁ ଆନେ ଅଗୋଚର ପିକ
ଘନ ରସରୁ ଆନରସେ ଚାତକ ରେ ।
ଚକୋର ଚନ୍ଦ୍ରକରୁ ନ ଜାଣେ ଆନ
ସେହି ପ୍ରକାରେ ପ୍ରିୟା ରସେ ମୋ ମନ ରେ ।। ୨୩ ।।

ଦଶ ଚଉର ଲୋକ ଲାବଣ୍ୟ ସାର
ସମ କି ଏହୁ ଅଙ୍ଗ ଶୋଭା ଲେଶର ରେ ।
ଯାହା ଦେଖିଲି ଆଖି ଆନ ନ ଦେଖି
ସୁଧା କର୍ଦ୍ଦମେ ଯେହ୍ନେ ଚକୋର ଲାଖି ରେ ।। ୨୪ ।।

ବାସୁରଇ ବୋଲାଇ ଜୀବନ ବନ୍ଧୁ
ପୁଣି ବୋଲାଇ ଅବା କରୁଣା ସିନ୍ଧୁ ରେ ।
ବନ୍ଧୁ ସମ୍ବନ୍ଧ ଲକ୍ଷ ଧନରେ ଦୟା
ଅଲକ୍ଷ କୃପା ଜଳନିଧି ମୋ ପ୍ରିୟା ରେ ।। ୨୫ ।।

ଭାବେ ବୋଇଲି ଚନ୍ଦ୍ରବଦନ ତୋର
ଦର୍ଶନେ ତୋଷକରେ ନେତ୍ର ଚକୋର ରେ ।
ବୋଇଲି କଳାକର ଭ୍ରମନ୍ତ ଦେହ
କାମିନୀ କଳାକର ନାହିଁ ସନ୍ଦେହ ରେ ।। ୨୬ ।।

କୁନ୍ଦ କୋରକ ମୋତି ଦାଡ଼ିମ୍ବ ବୀଜ
ସଖୀର ପ୍ରଭା ଦନ୍ତ ଉପମା ବ୍ୟାଜରେ ।
ମନ୍ଦ ସ୍ମିତେ କି ଶତ୍ରୁ ପ୍ରକାଶ ଦେଖି
ମଧୁ ଫଣାରେ ମକ୍ଷି ପରାଏ ଆଖି ରେ ।। ୨୭ ।।

କାଞ୍ଚନ ଘଟ କରି କପୋଳ ଭୃଙ୍ଗ
ଶ୍ରୀଫଳ ତାଳ ହେମ ଶିଖରୀ ଶୃଙ୍ଗ ରେ ।
ସମ[1] ଉପମା ଏହା କରି ନ ପାରି
କାମ ସୁଧା ଭଣ୍ଡାର ଗିରୀଶ ସରି ରେ ।। ୨୮ ।।

ସୁଧାଧାରୀ ମାଧୁରୀ ଏବେ ଜାଣିଲି
ଅନ୍ତବଚନ ପ୍ରତିଶ୍ଳୋକେ ଭଣିଲି ରେ ।
କଠିନ ପ୍ରେମରସ ପ୍ରତିମା ହେଲି
ନେତ୍ର ପ୍ରତିମା ସଙ୍ଗେ ନିବାସ କଲି ରେ ।। ୨୯ ।।

ସ୍ତନ ତଟ ଲଗାଇ ହୃଦୟ ଦେଶ
ଅଙ୍ଗ ବସନ କାଢ଼ି ଦେଲେ ଆଶ୍ଳେଷ ରେ ।
ଯହିଁ[2] ପରମାନନ୍ଦ ଲଭେ ଜୀବନ
ତହିଁକି ଏକା ସାକ୍ଷୀ ମନୋଜ ମନ ରେ ।। ୩୦ ।।

ବିଷ ବିଶଦ[3] ହେମବଲ୍ଲୀ କୁଟିଳ
ମାରି ଉରଗ ପାଶ ନୋହେ ଶୀତଳ ରେ ।
ବାହାରେ ବେଢ଼ାଇଲେ ଦ୍ରବେ ଅନ୍ତର
ବାହୁ ଅପୂର୍ବ ଲେପ ରକ୍ତ ପଥର ରେ ।। ୩୧ ।।

କ୍ଷୀଣ ମଧ୍ୟମ ସମ ହେବ କେଶରୀ
ହରି ବାଦ୍ୟମଧ୍ୟା ହି ବୋଲି ନ ପାରି ରେ ।
ଦରଶନେ ଏମନ୍ତ ପ୍ରତେ ହୋଇଲି
ମୃଣାଳ ତନ୍ତୁ ହେମ ଗିରି ବହିଲି ରେ ।। ୩୨ ।।

ବିପରୀତେ ଉରଜ ଉରଜରେ ଦେଇ
ବିଶ୍ରାମ ବ୍ୟାଜେ ବୋଲେ ପାରିବ ନାହିଁ ରେ ।
ରତି ବିନୟ ବାଣୀ[4] ସହସ୍ର ଶୁଣି
ପାଳଟି ଘନରସ ବରଷେ ଆଣି ରେ ।। ୩୩ ।।

---

୧. ସ୍ତମ ( ପୋଥି ପାଠ )
୨. ଜହିଁ ,,
୩. ବିଷଦ ,,
୪. ବାଣି ,,

ରସ ଆବେଶ ବେଳେ ଶଙ୍କରେ ଚେତ
ମାଗିଲ ଦୁରୋଦରେ ହାରିଲ ରତି ରେ ।
ହସି ବାହୁ ଯୁଗଳେ ଭିଡ଼ି ସୁଦତୀ[1]
ବୋଇଲ ଦେବା ପଣ୍ଡିତ ଯୁବତୀ ରେ ॥ ୩୪ ॥

ଗଣ୍ଡଶିଳା ମନ୍ମଥରଥ ଚରଣ
କାମ ଅମିୟସର ତୀର୍ଥ ପାଷାଣ ରେ ।
ମନୋଜ ରସ ସିନ୍ଧୁ ତରିବା ପାଇଁ
ନିତମ୍ବ ବିମ୍ବ ପ୍ଳବ ବହିଲ ବିହି ରେ ॥ ୩୫ ॥

ଘନ ଜଘନ ଘନ ରସ ନିଧାନ ।
କାମ ସର୍ବ ସଂପଦ ଭଣ୍ଡାର ସ୍ଥାନ ରେ ।
ଦକ୍ଷିଣ ପରାନନ୍ଦ କନ୍ଦର କନ୍ଦ
ଧୂର୍ତ୍ତ ବିବେକ ଶତ୍ରୁବନ୍ଧନ ଫାନ୍ଦ ରେ ॥ ୩୬ ॥

ଅତି ଯତନରେ ତନୁ ବିହି ବହିଲ
ପ୍ରକୃତି ଗୁଣ ତହିଁ କାରଣ କଲ ରେ ।
ଆନନ୍ଦ ପରିପାକ ଫଳ ତାହାର
ସେ ତହିଁ ରଚିଅଛି ଗୁପତେ ପୁର ରେ ॥ ୩୭ ॥

କରି କର ଉଲଟ ହେମ କଦଳୀ
ସଚଳ ହେମ ସ୍ତମ୍ଭ ସ୍ମର ଅର୍ଗଳୀ ରେ ।
ଉରୁ ଉପମା ଅସମ୍ଭବ ଏମାନ
ଯହିଁ ବାନ୍ଧିଲ କାମ ମନ ନୟନ ରେ ॥ ୩୮ ॥

ଜଳଦ କୋକନଦ ସ୍ଥଳ କମଳ
ପାଦ ଛୁଇକ ନମଞ୍ଛାଇ[2] ସକଳ ରେ ।
କୋଳ କେଳି ଫଳରୁ ମଧ୍ୟ ମହିଳା
ଯାହା ଛୁଇଁ ସୁନ୍ଦର ଏବେ ହୋଇଲ ରେ ॥ ୩୯ ॥

ଚିତ୍ତେ ଭାବିଲେ ପ୍ରିୟା ପଦ କମଳ
ହୃଦୟ ବୋଲେ ତାର ହୋଇବି ତଳ ରେ ।
ନୟନ ବୋଲେ ଗଳେ କରିବି ମାଳ
ଅଙ୍ଗ ଅନଙ୍ଗ ତାପ ହେବ ଶୀତଳ ରେ ॥ ୪୦ ॥

---

୧. ସୁଦତି ( ପୋଥି ପାଠ )
୨. ନମଛାଇ ,,

ଏହି ପ୍ରକାରେ ପ୍ରିୟା ସକଳ ଗୁଣ ।
କୁନ୍ଦବଲ୍ଲୀକ[୧] ଲକ୍ଷ୍ୟମାନ କରଣ ରେ ।
କହନ୍ତେ ଏହି କାଳେ ରସ ମଞ୍ଜରୀ
ପ୍ରବେଶେ ସ୍ମିତ ଉକଳ ରସ ମଞ୍ଜରୀ ରେ ।। ୪୧ ।।

ନନ୍ଦ ନନ୍ଦନ ବୃଷଭାନୁ ନନ୍ଦନୀ
ପଦ ପଙ୍କଜ ରଜ ମସ୍ତକେ ଘେନ ରେ ।
ମନେ ସଞ୍ଚାର ଗୁରୁ ଚରଣ ଧ୍ୟାନ ।
ଭଣିଲେ ନୃପବର ପୁରୁଷୋତ୍ତମ ରେ ।। ୪୨ ।।

————

୧. କୁନ୍ଦବଲ୍ଲିକା ( ପୋଥି ପାଠ )

# ଷଷ୍ଠ ଛାନ୍ଦ

ରାଗ—କାଳୀ

ଏଥୁଅନ୍ତରେ ସେ ଏକାନ୍ତରେ ଗହନାନ୍ତରେ ବସି ।
ପ୍ରିୟ ସଙ୍ଗମ ହୃଦୟଙ୍ଗମ ବିଧୁର କଥା ଭାଷି ।
କୃଷ୍ଣ ଛଦ୍ମବେଶ ଦେଶ ସଦେଶ ରସମଞ୍ଜରୀ ଯେନ ।
ଆସି ପ୍ରବେଶ ମନେ ହରଷ ଦେଖିଲେ ରସିକମଣି ॥ ୧ ॥

ସେ ମନୋରମ ଚମ୍ପକ ଦାମ ଗାନ୍ଧର୍ବା କରେ ଦେଲା ।
ପ୍ରିୟ ବନନ୍ତ ଖଞ୍ଜନ ନେତ୍ରୀ ଘୁମୁରେ ଜଣାଇଲା ।
ଶୁଣ[1] ମୁକୁନ୍ଦ ଉଦନ୍ତ କୁନ୍ଦ- ସୁନ୍ଦର ଦନ୍ତ ପ୍ରିୟା ।
ବୋଇଲେ ପ୍ରାଣ- ବନ୍ଧୁ ମୋ ପ୍ରାଣ ରଖିବ କରି ଦୟା ॥ ୨ ॥

ନିମେଷ ଲେଶ ବଧି ଆୟୁଷ କାଳ ସମାନ ହେଲା ।
ରତି ନାୟକ ପଞ୍ଚ ସାୟକ କୋଟୀ ଏ କୋଟୀ କଲା ।
ଜୀବନ ବନ୍ଧୁ ଅଧର ମଧୁ ମଧୁର ପାନ ପାଇଁ
ମହା ଦୁର୍ଘଟ କାମ ସଙ୍କଟ ପାଇଲେ ଅଛୁ ରହି ॥ ୩ ॥

ଭାବମା ଭବ ଭାବନା ନାବ କାମ ସିନ୍ଧୁରେ ମୋର ।
ନିତମ୍ବ ବିମ୍ବ ସ୍ତନ ଆଲମ୍ବ ପାଇଲେ ହେବ ପାର ।
ଏହି ପ୍ରକାରେ ମାର ବିକାରେ ବହୁ ବିନୟ ବାଣୀ ।
କହିଲେ ଯେତେ ମୁଁ ତାହା କେତେ କହିବ ପରିମାଣି ॥ ୪ ॥

ସଖି ଅଜାଗେ ମଦନ ଲଗେ ପଡ଼ିଲେ ପ୍ରାଣନାଥ ।
ଲୋଢ଼ି ଆଜୁରେ ତୋ କୁଣ୍ଡଳରେ ହୋଇ ଶରଣାଗତ ।
ତୋର ସଙ୍ଗତ ହେଲେ ସଂଘାତ କୃଷ୍ଣ କାମ ମୋହନ ।
ସେ ତୋହ ବିନା- କାମେ ବେଦନା ପାଇ ହୋଇଲେ ଖିନ୍ନ ॥ ୫ ॥

କୁସୁମ କାଣ୍ଡ କୁସୁମ କାଣ୍ଡ ରୁନ୍ଧି ଅନନ୍ତ ପଥ ।
କୁଞ୍ଜ ପିଞ୍ଜରେ ଭରି ସଜ୍ୱରେ ଚପାଇ ମନମଥ ।
ନାନା ବିକାର ତୋର ଆକାର ଚେତାଇ ଲଗାଇଲା ।
ପିକ ବସନ୍ତ ଆଦି ସାମନ୍ତ- ମାନଙ୍କୁ ଜଗାଇଲା ॥ ୬ ॥

---

୧. ଶୁଣ ( ପୋଥି ପାଠ )

ସେ ପଞ୍ଚବାଣ ଏ ପଞ୍ଚପ୍ରାଣ ନିର୍ଲକ୍ଷ କଲ ଲକ୍ଷ ।
କୃଷ୍ଣ ନବଳ ସେ ମହାବଳ ସଖି ତୁ ରକ୍ଷ ରକ୍ଷ ।
ଏବେ ଅନଙ୍ଗ- କୁଞ୍ଜରେ ସଙ୍ଗ ଲଭିବା ଆଶେ[୧] ତୋର ।
ଅଛନ୍ତି ବସି ହୋ ଗୃରୁକେଶି କର ତୁ ପ୍ରତୀକାର ॥ ୭ ॥

ଏ ବାଣୀ ଶୁଣି ରମଣୀମଣି ପାଣି ପଙ୍କଜେ ଧରି ।
ରସମଞ୍ଜରୀ କର ପିଞ୍ଜରୀ- ଗତ ପରାଯେ କରି ।
ବୋଇଲେ ସଖି ତୁ ଯିନା ସାକ୍ଷୀ ବେନି ହୃଦୟ ଭାବେ ।
କହିବୁ ଯାହା କରିବି ତାହା ମଦନ ପରାଭବେ ॥ ୮ ॥

ଏତେକ କହି ମଉନେ ରହି ଲଳିତା ମୁଖ ଚୁହିଁ ।
ସଜନୀ ମତେ ରସ ସମ୍ମତେ ବସି ଏକାନ୍ତେ କହି ।
ଶୁଣ ନିତମ୍ବବତି ଆଳମ୍ବ ନ କର ବିଳମ୍ବନ ।
ଏଥି ଉଦାସ ଦୁହିଙ୍କ ନାଶ ମଦନ ଉଦ୍ଦୀପନ ॥ ୯ ॥

ଜୀବନ ଲବ ନବ ପଲ୍ଲବ ଚରଣେ ସମର୍ପଣ ।
କରି ଯାହାର ଭବୁ ବାହାର ହୋଇଲେ ମୁନିଗଣ ।
ମନ ବଚନ ତନୁ ଜୀବନ ତହିଁ ଅର୍ପଣ କରି ।
ତୋର କି ରତି- ପତିକି ଖ୍ୟାତି ଶୁଣରେ ବର ନାରି ॥ ୧୦ ॥

ବହୁତ କଷ୍ଟ ପାଇ ସେ ପୁଷ୍ଟ କରିଛୁ ସ୍ନେହତରୁ ।
ସେ ପରିପାକ ଫଳେ ଅନେକ ସୁଖ ପାଇବୁ ଖରୁ ।
ଦେଖ ଗୋବିନ୍ଦ ସେ ଅରବିନ୍ଦ ନୟନ ତୋର ଆଶେ[୨] ।
ବସି ଏକାନ୍ତେ ସେ ରତିକାନ୍ତେ ଦୁଃଖିତ କୁଞ୍ଜ ବାସେ ॥ ୧୧ ॥

ବଞ୍ଚା ମାରଣ ବକ ଦାରଣ ନିର୍ଦ୍ଦୟ ଭୁଜ ଦଣ୍ଡ ।
ତୃଣା ପାଟନ ଅଘା ସ୍ଫୋଟନ କଠିନତର ପିଣ୍ଡ ।
ଏଥି ସନ୍ଦେହ ନାକର ଦେହ ମୃଦୁଳ ଭାବ ଧରି ।
ଦାରୁ ନିକର ଭେଦ ଭ୍ରମର ସୁମନା ସୁଖକାରୀ ॥ ୧୨ ॥

ନୋହି କାତର ସହି କାନ୍ତର କର ପୂରଣ ରସ ।
ଦେଖ ଦିବସ କରେ ସାରସ ଲଭେ ଉଲ୍ଲାସ ବାସ ।
ଶୁଣରେ ସଖି ଆକାର ରଖି ରସନ୍ତ ରସିକମା ।
ମଧୁର ରସ ଗର୍ଭ ପନସ ଯେସନ କଣ୍ଟକମା ॥ ୧୩ ॥

---

୧. ଆସେ ( ପୋଥି ପାଠ )
୨. ଆସେ ( „ )

କାନ୍ତ ବସନ ଧଇଲେ ମନ ଆନ କରିବ ନାହିଁ ।
ବନିତା କର ଅଙ୍କୁଶ ଧର କଳହ ନ ଯୋଗାଇ ।
ରସ ରଭସ ବାସ ନବଶ କଲେ ହେ ରସିକମା ।
ଲଜ୍ଜା ସଙ୍ଗରେ ପ୍ରିୟ ଅଙ୍ଗରେ ମ୍ଳାନ ବସନ ଜାଣି ॥ ୧୪ ॥

ବର ତରୁଣୀ ବର ତରୁଣି ନୁହନ୍ତି କାନ୍ତ ରତେ ।
ବନିଯ଼ୁ ବାଣୀ ପ୍ରହେଳି ଶୁଣି ଶୁଝନ୍ତି ବିପରୀତେ ।
ରମଣୀମଣି ରମଣୀମଣି ପରମାନନ୍ଦ ବୋଲି ।
ବାହାରେ କୃଷ୍ଣ ହେବାରେ ପୁଷ୍ଟ ରସକୁ ନୋହେ ଆଳି ॥ ୧୫ ॥

ନାହିଁ ସୁଖଦ କାହିଁ ଦୁଃଖଦ ଦେବା ବୋଲିବା ବାଣୀ ।
ରସ ମଣ୍ଡିତା ରତି ପଣ୍ଡିତା ଜାଣୁ ତା ଜାଣୁ ମଣି ।
ରତି ମଧୁର ଅତି ମଧୁର ପ୍ରାପ୍ତେ ଅରୁଚିକର ।
ଭାବ ଯନ୍ତ୍ରରେ ତା ରସାନ୍ତରେ ରସାଇ ନାଗରବର ॥ ୧୬ ॥

ଯାଚି[୧] ଚୁମ୍ବନ ନିଜାଲିଙ୍ଗନ ମୂରତି ସନମତ ।
ଅଦେଯ଼ୁ କର ଥାଇରେ କଷ୍ଟ-ଗତି ଏତେ ମାତ୍ର ତ ।
କାମେ ଆବେଶ ହେଲେ ହେ ଶ୍ଳେଷ କରି ନ ଦେଇ ରସ ।
ପାନେ ଅକ୍ଳେଶ ହେଲେ ପୀଯ଼ୂଷ ଆଦର ହୋଏ ନାଶ ॥ ୧୭ ॥

କାମ ପ୍ରବନ୍ଧେ ସୁରତ ବନ୍ଧେ ଲୁଳିତ ତନୁ ଲତା ।
କଲେ ହେ ଯାହା ସହନ୍ତି ତାହା ମଦନ ମଦେ ମତ୍ତା ।
ବଲ୍ଲଭ ବଳ ନିଜ ଦୁର୍ବଳ ଦୁଃଖଦ ନୋହେ ତହିଁ ।
ମତ୍ତ ଭ୍ରମର ଶିରୀଷ ଦଳ କେଳୀ ପରାଏ ହୋଇ ॥ ୧୮ ॥

ମାର ଅବଶେ ଗାଢ଼ ଆଶ୍ଲେଷେ ସୁଖୀ ରମଣୀମଣି ।
ନଗ ଭଞ୍ଜନ ସେ ପ୍ରଭଞ୍ଜନ କୁସୁମ ଲତା ଜାଣି ।
ଗାଢ଼ କରଜ- ଘାତ ଉରଜ ସହନ୍ତି ଅବହେଳେ ।
ଯେହ୍ନେ ସଜଳ କରକା ଜାଳ ରସା ବରଷା କାଳେ ॥ ୧୯ ॥

ପ୍ରିୟ ରଞ୍ଜନା ସୁଖ ବ୍ୟଞ୍ଜନା ନାନା ବଙ୍କିମା ବାଣୀ ।
ହେତୁ ନ ଜାଣି ଭାବେ ରମଣୀ ରତି ସରସେ ଭଣି ।
ବଲ୍ଲଭ ମନ ଜତୁ ଦହନ ପ୍ରାପ୍ତେ ତା ମନମଥ ।
ଚତ୍ତେ ଲଗାଇ ଭାବେ ଦ୍ରବାଇ ପୂରଇ ମନୋରଥ ॥ ୨୦ ॥

---

୧. କାଚ ( ପୋଥି ପାଠ )

ଅତି ଦୁସ୍ତୁଜ[1] ସେ ନିଜ ଲଜ ତ୍ୟଜନ୍ତି ସେହି କାଳେ ।
ଚିର ପିରତି ଚିର ପିରତି ଘୁଡ଼ନ୍ତି ରତି ଭେଳେ ।
ଯାହା ନ କରି କେବେହେ କର୍ଣ୍ଣ- ଗମନ୍ତି ତାହା କରି ।
ଅମିୟ[2] ପିଇ ସନ୍ତୋଷେ ନାହିଁ ବୋଲନ୍ତି ସୁଧାଧରୀ ॥ ୨୧ ॥

କଥା ଆମ୍ଭର ନନ୍ଦ ସମ୍ଭର- ପର ଚେତାଇ ଦେବ ।
ବଲ୍ଲଭ କୋଳେ ପଡ଼ିଲେ ଭେଟିଲେ କେ କାହା ଚେତାଇବ ।
ଏହି ପ୍ରକାରେ ମାରି ଧକାରେ ନାନା ବଚନ କହି ।
ବୋଇଲା ସଖି ଅଇଲୁ ଦେଖି କୃଷ୍ଣ ଅଛନ୍ତି କାହିଁ ॥ ୨୨ ॥

ସେ କି ଆସିବେ ସଖି କି ଯିବେ କିବା ଅନ୍ତରୀ ଭେଟି ।
ଜାଣିଛୁ ଯାହା ଆମ୍ଭଙ୍କୁ ତାହା ନ କହୁ କରି ଛୁଟି ।
ଏ ବାଣୀ ଶୁଣି ମସ୍ତକେ ପାଣି ଦେଇ ବୋଇଲା ଯାହା ।
ତୁମ୍ଭର ଇଚ୍ଛା କାମର ବାଞ୍ଛା ବଶେ କରିବେ ତାହା ॥ ୨୩ ॥

ବୋଲେ ବିଶାଖା ଦୁହିଙ୍କି ଦେଖା ଦେଖି କରିବା ଯାଏ ।
ପ୍ରିୟ[3] ଆସିବା ଗାନ୍ଧର୍ବାପିବା ଆମ୍ଭ ତୁମ୍ଭ ଉପାଏ ।
କଥା ଗୃତୁରୀ ଶୁଣି ଚତୁରୀ ରସମଞ୍ଜରୀ ବେଗେ ।
ଗଲା ଆଣିମା ପାଇଁ ଜାଣିମା ସଙ୍କେତ ବନ ଲଗେ ॥ ୨୪ ॥

ଅନଙ୍ଗ କୁଞ୍ଜ ନିକଟେ କଞ୍ଜ ପୁଞ୍ଜ ରଞ୍ଜନ ସର ।
ଘରେ ଗୋପାଳ ମଧୁ ମଙ୍ଗଳ ତୁଳସୀ ପରିବାର ।
ସେ ପୀତବାସ ଦେଖି ହରଷ ରସମଞ୍ଜରୀ ହେଲା ।
ରାଧା ସୁମେଧା ବଚନ ସୁଧା ଶ୍ରୁତି ପୁଟରେ ଦେଲା ॥ ୨୫ ॥

ପ୍ରିୟା ଉଦନ୍ତ ରବି ନିଶାନ୍ତ କମଳ କୃଷ୍ଣ ଚିତ୍ତ ।
ପ୍ରଫୁଲ୍ଲ ସ୍ମିତ ଭବେ ଉଦିତ କଲା ହରଷ ଜାତ ।
ଚିତ୍ତ ଉଲ୍ଲାସ ବିଧୁ ପ୍ରକାଶ ଜଳଧି ରସ ଜାଣି ।
ହୋଇ ହରଷ ଗୋବିନ୍ଦ ରସ- ମଞ୍ଜରୀ ଆଗେ ଭଣି ॥ ୨୬ ॥

ଏ କୃଷ୍ଣ ରସେ ଭାବ ପରଶେ[4] ଦ୍ରବି ହୃଦୟ ଦେଶ[5] ।
ଧ୍ୟାନେ ଆବେଶ ନିଜ ମାନସ- କଞ୍ଜକରୀ ଉଲ୍ଲାସ ।
ରାଧାଗୋବିନ୍ଦ ପଦାରବିନ୍ଦ ବେନି ମନରେ ଘେନି ।
ପୁରୁଷୋତ୍ତମ ଅନଙ୍ଗଧାମ ନୃପତି ମଣି ଭଣି ॥ ୨୭ ॥

————

୧. ଦୁସ୍ତୁଜ = ଦୁସ୍ତ୍ୟାଜ୍ୟ
୨. ଅମିଅ ( ପୋଥି ପାଠ )
୩. ପ୍ରିଅ ( ପୋଥି ପାଠ )
୪. ପରଶେ ( ,, )
୫. ଦେଶେ ( ,, )

# ସପ୍ତମ ଛାନ୍ଦ

ରାଗ—କଳସା

ଏଥୁ ଅନନ୍ତରେ ସୁମନସ ସର ତୀରେ
ସୁମନା ବ୍ରତତୀ ବୃତ ମଦନ ମନ୍ଦରେ
ପ୍ରିୟା ଗୁଣ ଗଣ ଗୁଣି ଶୁଣି ପୁଣି ପୁଣି
ମଦନ ଆତୁରେ ରସମଞ୍ଜରୀ କି ଭଣି ॥ ୧ ॥

ଶୃଙ୍ଖଳା* —

କହ ପ୍ରାଣ ବାନ୍ଧବୀର କୁଶଳ ଉଦନ୍ତ
ଦନ୍ତ ଘାତ କରେ ଦନ୍ତାବଳ ରତିକାନ୍ତ
କାନ୍ତାମୁଖ ପଙ୍କଜରେ ଥିଲି ମୋର ମନ
ମନମଥ ଶରଘାତେ[୧] ନୋହନ୍ତୁ ଧ୍ୱଂସନ ॥ ୨ ॥

ସନମତ କଲି ପ୍ରାଣ ପ୍ରିୟା ବିନୁ ଜୀବ
ଜୀବବନ୍ଧୁ କୃପାସିନ୍ଧୁ ଥାଉ କି ଏ ଦେବ
ଦେବ ସୁଧାଧର ସୁଧାଧର ଧର ହର
ହର ସୁଧାଧରୀ ସଙ୍ଗ ଦେଇ ମୋ ଆତୁର ॥ ୩ ॥

ତୁ ରସମଞ୍ଜରୀ ମତେ କର ପ୍ରତୀକାର
କାରଣ କେବଳ ପ୍ରିୟା ଉଦନ୍ତ ଜୀବର
ବରଜ ରାଜ କୁମାରୀ ମୋର ପ୍ରାଣସହି
ସହିଥିବ ଦୁଃଖସେବ ଉହ ଦଶା ବହି ॥ ୪ ॥

ବହି ପ୍ରାଣ ସିନା ମୋର ପ୍ରାଣର ବଲ୍ଲଭ
ଲଭିଲେ ରହିବ ଜୀବ ତା ଅଙ୍ଗ ସୁରଭି
ସୁରଭିବୃନ୍ଦ ସଙ୍ଗତେ ତେଜି ସଖୀ ଗଣ
ଗଣନା କରଇ ଏକା ପ୍ରିୟା ଆଗମନ ॥ ୫ ॥

ମନମଥ ମନମଥନ କରେ ନିରତେ
ରତେ କୁଚ ଶମ୍ଭୁ ଆଲିଙ୍ଗନ ରୁଚି[୨] ଚିତ୍ତେ
ଚିତ୍ତେ ମୋର ପ୍ରାଣବନ୍ଧୁ ରସ କରି ଚିନ୍ତା
ଚିନ୍ତାମଣି କଣ୍ଠପ୍ରାପ୍ୟେ କାମେ ଅଧୀନତା[୩] ॥ ୬ ॥

---

୧. ପଥେ ( ପୋଥି ପାଠ )
୨. ରୁଚକ ( „ )
୩. ଅଧୀତା ( ପୋଥି ପାଠ )

* ଶୃଙ୍ଖଳା=ସନ୍ଧିରେ ପୂର୍ବବର୍ତ୍ତୀ ପଦର ଶେଷବର୍ଣ୍ଣଚୟ ସଙ୍ଗେ ପରବର୍ତ୍ତୀ ପଦର ଆଦ୍ୟ ବର୍ଣ୍ଣଚୟର ସମାନତା ଥାଏ ତାହାକୁ ଶୃଙ୍ଖଳା କୁହାଯାଏ ।

ଦିନ ତାର ବିନୁ କୋଟୀ କୋଟୀ ଯୁଗ ସମ
ସମସ୍ତ ପ୍ରକାରେ ଦାହ କରୁଅଛି କାମ
କାମନା କରଇ ଏକା ପ୍ରାଣବନ୍ଧୁ ସଙ୍ଗ
ସଙ୍ଗର ଅଙ୍ଗ ତା ଅଙ୍ଗ କରଛି ଅନଙ୍ଗ ॥ ୭ ॥

ଅନଙ୍ଗ ମଞ୍ଜରୀ ଅଗ୍ରଜାକୁ ଘେନ ଆସ
ଆଶ[1] ଯେବେ ଅଛି ମୋରେ ଯାଅ ପ୍ରିୟା ପାଶ[2]
ପାଶରେ ବାନ୍ଧିଛି ପ୍ରାଣ ତା ବିନୁ ମସ୍ମାଣ[3]
ଆନ ଗତି ନାହିଁ ଏକା ତା ସଙ୍ଗ ଶରଣ ॥ ୮ ॥

ରଣ ରଣଙ୍କରେ ଅବହେଳେ ପ୍ରାଣ ଯିବ
ଜୀବବନ୍ଧୁ ବାନ୍ଧବୀ କ ରୂପେ ବୋଲାଇବ
କୃଷ୍ଣ ରସ ବାଣୀ ରସମଞ୍ଜରୀ ଶୁଣିଲା
ବୃଷଭାନୁ ନନ୍ଦିନୀର[4] ଉଦନ୍ତ ଭଣିଲା ॥ ୯ ॥

ଶୁଣ ରସସିନ୍ଧୁ ପ୍ରାଣ ବାନ୍ଧବୀ କହିଲା
ପ୍ରାଣ ମୋର ପ୍ରାଣବନ୍ଧୁ ନିକଟେ ରହିଲା
ବିଯୋଗେ ପଲକ କ୍ଷଣ ଲବ କାଳ ମତେ
କଳ୍ପ କଳ୍ପ ହୋଇଛି ଯେନମେ ଦିବ୍ୟ ଶତେ ॥ ୧୦ ॥

ନୟନ ପ୍ରତିମା କୃଷ୍ଣ ଏ ବାଣୀ ପ୍ରମାଣ
ମୋହ ଠାରେ ଯହିଁ ତହିଁ ନ ଦେଖଇ ଆନ
ଶୁଣି ଏ ବଚନ କୃଷ୍ଣ ମନ୍ଦ ମନ୍ଦ ହସି
ବୋଇଲେ ମୋ ନେତ୍ର ତାରକାରେ ଅଛି ବସି ॥ ୧୧ ॥

ଚନ୍ଦ୍ରକର ଚକୋର ଗୃତକ ଘନ ରସ
ବନ ହାନୁ ମୀନ ଦିନକରରେ ସାରସ
ଯଦ୍ୟପି ବିଯୋଗ ଏମାନଙ୍କୁ ଦୁଃଖକର
ସହସ୍ର ଅଂଶରେ ସମ ନୋହେ ମୋ କ୍ଲେଶର ॥ ୧୨ ॥

ଗୃହିଁଲେ ବାହାରେ ନେତ୍ର ବୁଜିଲେ ଅନ୍ତରେ
ପ୍ରିୟା ରୂପ ପ୍ରକଟଇ ମତେ ନିରନ୍ତରେ
ଇନ୍ଦ୍ରଜାଲ ପ୍ରତିଭା ଲଭିଲ ପ୍ରିୟା କାହୁଁ
ଏକା ଦିଶେ ନ ଦିଶେ ଆନେ[5] ଗୃହୁଁ ଗୃହୁଁ ॥ ୧୩ ॥

---

୧. ଆସ ( ପୋଥି ପାଠ )
୨. ପାସ ( ” )
୩. ମସ୍ମାଣ = କାମଦେବ
୪. ନନ୍ଦନୀ ( ପୋଥି ପାଠ )
୫. ଅନେ ( ” )

ମନ ନେଇ ସଙ୍ଗେ ମୋର ଜ୍ଞାନ ହରି ନେଲ
ଦେହ ସଙ୍ଗେ ପଞ୍ଚପ୍ରାଣ ପଞ୍ଚେଷୁକୁ ଦେଲ
ଏତେ ମତେ ପ୍ରତୀକାର କରୁ ପ୍ରାଣ ସହି
ଦୁର୍ଘଟ ବେଦନା ସହି ଅଛୁ ପ୍ରାଣ ରହି ॥ ୧୪ ॥

ଏମନ୍ତ ବିରହ ଦୁଃଖ କହି ସେ ଗୋବିନ୍ଦ
କୁନ୍ଦ ବଲ୍ଲୀ କରେ ଦେଇ କର ଅରବିନ୍ଦ
ପ୍ରିୟା ଅନୁସରଣକୁ ଉଠିଲେ ମୁରାରି
ଏହି କାଳେ ଜଣାଇଲ ସେ ରସମଞ୍ଜରୀ ॥ ୧୫ ॥

ଘୁଡ଼ ଏ ସମ୍ଭ୍ରମ ସ୍ଥିର କର ଚିତ୍ତ ବୃତ୍ତି
ଛିଦ୍ର ଜାଣି ପ୍ରହାର କରିବ ରତି ପତି
ରହ କ୍ଷଣେ ଏହି କ୍ଷଣେ ବାନ୍ଧବୀ ପ୍ରବେଶେ
ଆନନ୍ଦ ସାଗର ଘୋଟିଯିବ ଦଶ ଦିଶେ ॥ ୧୬ ॥

ଏମନ୍ତେ ଶୁଭିଲ ସଖୀକୁଳ କୋଳାହଳ
କୁତୂହଳେ ବୋଲନ୍ତି କୁସୁମ ତୋଳ ତୋଳ
କେ ବୋଲଇ ସୁମନସେ କୃଷ୍ଣ ଭୃଙ୍ଗ ଦେଖି
ପ୍ରକାମରେ ପିନ୍ଧଇ ଆପୃତ୍ତ ନାହିଁ ସଖି ॥ ୧୭ ॥

କେ ବୋଲଇ ସଖି ଏ ତମାଳ ତରୁ ତଳେ
ତମାଳ ବରନ ଦେଖିଥିଲି ଆଉ ବେଳେ
ମୂଳେ ବେଢ଼ିଥିଲା ଗୃରୁ କନକ ମଞ୍ଜରୀ
ଅଗ୍ରେ ଶତଦଳ ମଧ୍ୟେ ଚକୋର ଚକୋରୀ ॥ ୧୮ ॥

କେ ବୋଲଇ ସଖି ମଲ୍ଲୀ ପାଶେ ତୁଣଅନା
ପୁନ୍ନାଗ ନାଗରେ ଶୋଭା ପାଉଛି ସୁମନା
କେ ବୋଲଇ ତୋଳଲୁ ନଆଳ ସୁମନସ
ଯାହା ଭୂଷଣକୁ ଅନୁକୂଳ ପୀତବାସ ॥ ୧୯ ॥

କେ ବୋଲଇ ତୋଳିବା ସମସ୍ତେ ସବୁଫୁଲ
ବୃଷଭାନୁ ନନ୍ଦନୀକ ହେବ ନାହିଁ ତୁଲ
ଘନଶ୍ୟାମ କୁଞ୍ଜେ ଯେବେ ଅଛନ୍ତେ ମିଳିବ
କରକଞ୍ଜେ ରଙ୍ଗ ବାସ ସୁମନା ତୋଳିବ ॥ ୨୦ ॥

କେ ବୋଲଇ ଏକ ଭୃଙ୍ଗ ଅନେକ ଦଂଶିଲା
ସକଳ ସୁମନା ମୁଖ ଚୁମ୍ବନେ ଗ୍ରାସିଲା
ମାର ମାର ବୋଇଲେ କରଇ ସେହୁ ପୀଡ଼ା
ମଧୁପ ବୋଇଲେ ଦେଖ ପାଉ ନାହିଁ ଗ୍ରୀଡ଼ା ॥ ୨୧ ॥

କେ ବୋଲଇ ସଖି ଅଭିନବ କାମ କେଳି
ଅବସ୍ଥା ନ ପାଇ ସ୍ଥାନ କଲା ବନସ୍ଥଳୀ
କେ ବୋଲଇ ତନୁଧର ଅତନୁ ହୋଇଲା
ଯୁବତି ମୋହନ ଆଣେ ଏ ବନେ ରହିଲା ॥ ୨୨ ॥

ଏତେ କହୁ କହୁ ସୁମନସ ସର ତଟେ
ଶୁଣିଲେ ମୋହନ ବଂଶୀସ୍ୱନ କର୍ଣ୍ଣପୁଟେ
ଏକ ତାନ ହୋଇ ଅବଧାନ କଲେ ତହିଁ
ରାଧା ସଙ୍ଗେ ସମସ୍ତେ ଉଗ୍ର କମନା ହୋଇ ॥ ୨୩ ॥

ସେ ସୁସ୍ୱର ବଂଶୀ ସ୍ୱର କର୍ଣ୍ଣଦ୍ୱାରେ ଗଲା
ହୃଦୟ କମଳକୁ କମଳ ବନ୍ଧୁ ହେଲା
କାମ ରସେ ପ୍ରଫୁଲ୍ଲ ହୃଦୟ ପଙ୍କଜ
ଚିତ୍ତବୃତ୍ତି ପ୍ରସାରିଲା କୃଷ୍ଣରେ ମନୋଜ ॥ ୨୪ ॥

ଦେଖୁ ଦେଖୁ ନିକଟ ହୋଇଲା ପ୍ରାପ୍ତେ ସ୍ୱନ
ମଦନ ବିକାର ମନେ କଲା ଉଦ୍ଦୀପନ
ଏକୁ ଏକେ ବୋଲନ୍ତି ରେ ଜୀବନ ବାନ୍ଧବୀ
ମାର ଅନ୍ଧାର ରଜନୀ ବେଣୁ[୧] ସ୍ୱନ ରବି ॥ ୨୫ ॥

କେ ବୋଲଇ ଅଷ୍ଟ ତଟେ ଗାଉଛୁ ରାଧା ନାମ
କେ ବୋଲଇ ମନ ଦେଲେ ତନୁ ଦହେ କାମ
ଯେ ଶୁଣଇ ବେଣୁ ନାମ ତାହାର ଧରଇ
ଧଇର୍ଯ୍ୟ ବିବେକ ସଙ୍ଗେ ଚିତ୍ତ ତା ହରଇ ॥ ୨୬ ॥

କେ ବୋଲଇ କାହୁଁ ସେ ଜାଣିଲା ସବୁ ନାମ
କେ ବୋଲଇ ସଖି ତାକୁ କହିଥିବ କାମ
ଯୁବତୀ ମୋହନ ମନ୍ତ୍ର ଶିକ୍ଷା ସେ ପାରଇ
ବୁଦ୍ଧି ଜ୍ଞାନ ନାଶି କାମ ସନ୍ତାପ କରଇ ॥ ୨୭ ॥

---

୧. ବେନୁ ( ପୋଥି ପାଠ )

ମଦନ ବିକାରେ ନାନା ପ୍ରଳାପ ବଚନ
କହୁ କହୁ ନିକଟେ ଶୁଭିଲା ବଂଶୀ ସ୍ୱନ
ଶ୍ରୁତି ସୁଖ ପାଇ ଅତି ଉତ୍କଣ୍ଠିତ ମନ
ବାଟ ଦିଗେ ପ୍ରସାରିଲେ ଚକିତେ ନୟନ ॥ ୨୮ ॥

ଅନୁମାନ କି କହିବା କାହାର କି[୧] ମନ
ସମସ୍ତ ଚିତ୍ତେ ସ୍ଫୁରିଲେ ଆସି ଶ୍ୟାମଘନ
ଏହି କାଳେ କଲ୍ପ ଯାହା ରତି ପ୍ରାଣନାଥା
ମନେ ବିଚାରି ବଚନେ କହି ନୋହେ ତାହା ॥ ୨୯ ॥

ନବଘନ ଶ୍ୟାମ ଧାମ ଶ୍ରୀ ନନ୍ଦ ନନ୍ଦନ
ବୃଷଭାନୁ ନନ୍ଦିନୀ[୨] ଚରଣେ ଦେଇ ମନ
ଗଙ୍ଗବଂଶ ଅବତଂସ ନୃପ କଣ୍ଠ ହାର
ଭଣିଲେ ପୁରୁଷୋତ୍ତମ ଅନଙ୍ଗ କେଶରୀ ॥ ୩୦ ॥

———

୧. କ୍ଷ ( ପୋଥି ପାଠ )
୨. ନନ୍ଦନୀ ( ,, )

# ଅଷ୍ଟମ ଛାନ୍ଦ

ରାଗ—କେଦାର

( ରଙ୍ଗକେଳୀ ବାଣୀରେ ଗାଇବ )

ଏଥିଅନ୍ତରେ[୧] ଶୁଣ ଦିବ୍ୟ ରସ ।
ରାଧା ସୁମନସ ଘରେ ପ୍ରବେଶ ॥ ୧ ॥

ଉପ ପଲ୍ଲବେ ଲବଙ୍ଗ ମଞ୍ଜରୀ ।
କୁଞ୍ଜ ପୁଞ୍ଜରେ ଲବଙ୍ଗ ମଞ୍ଜରୀ ॥ ୨ ॥

ସଙ୍ଗେ ପ୍ରିୟ ଦରଶନେ ଉତ୍ସୁକ ।
ଏହି ସମୟ ଜାଣି ସାରି ଶୁକ ॥ ୩ ॥

ରାଧା ରାଧା କୃଷ୍ଣ କୃଷ୍ଣ ଭାଷିଲେ[୨] ।
ବେନି ହୃଦୟେ ଭାବ ପ୍ରକାଶିଲେ ॥ ୪ ॥

ରାଧା ନାମ ଶୁଣି[୩] କୃଷ୍ଣ ମାନସ ।
ସେହି ଆକାରେ ହୋଇଲା ଆବେଶ ॥ ୫ ॥

ସାରି ଶୁକ[୪] ସମ୍ମୁଖେ ଚଳିଗଲେ ।
ରସ ମଞ୍ଜରୀକି କି କି[୫] ବୋଇଲେ ॥ ୬ ॥

ସେହି ନିକଟେ ଘନ କୁଞ୍ଜାନ୍ତରେ ।
ରାଧା ଶୁଣିଲେ କୃଷ୍ଣ ଶୁକ ସ୍ୱରେ ॥ ୭ ॥

ଘନଶ୍ୟାମ ରୂପ ମନେ ପ୍ରବେଶ
ଏଣୁ ମଦନ ବିକାରେ ଅବଶ ॥ ୮ ॥

ପୁଣି ପ୍ରବେଶ ସେ ରସମଞ୍ଜରୀ
ଶିରେ କରି କର କଞ୍ଜ ପିଞ୍ଜରୀ ॥ ୯ ॥

ସଖୀଗଣ ମୁଖକୁ ସେ ଚାହିଁଲା
ଏହି ଲାଗେ କୃଷ୍ଣ ବୋଲି କହିଲା ॥ ୧୦ ॥

---

୧. ଅନନ୍ତରେ ( ପୋଥି ପାଠ )
୨. ଭାସିଲେ ( ,, )
୩. ସୁଣି ( ,, )
୪. ସାରି ଶୁକ ରବ ( ,, )
୫. କ୍ଷା କ୍ଷା ( ,, )

କାହିଁ କାହିଁ ବୋଲନ୍ତେ ପ୍ରିୟ ସଖୀ
ରାଧା ଭ୍ରମାଇଁ ମତ୍ତ ଖଞ୍ଜନାକ୍ଷୀ ॥ ୧୧ ॥
ସବୁ ଦିଗରେ ନିକ୍ଷେପଣ କଲେ
ଚନ୍ଦ୍ର ଉଦୟ ବୃଷ୍ଟି ସୃଷ୍ଟି ମଣ୍ଡିଲେ ॥ ୧୨ ॥
କୃଷ୍ଣ ମୁଖଚନ୍ଦ୍ରେ ନେତ୍ର ପଡ଼ିଲା
ତହିଁ ଲାବଣ୍ୟ ସୁଧାରେ ବୁଡ଼ିଲା ॥ ୧୩ ॥
ଭ୍ରମି ଭ୍ରମି କି ତୃଷିତ ଚକୋର
ପୁଣ୍ୟେ ପାଇଲା ପୂର୍ଣ୍ଣ ସୁଧାକର ॥ ୧୪ ॥
କି ସେ ମହା ଘର୍ମ ତାପି ଗୃତକ
ଘନ ରସେ ପୂରିଲା ଚଞ୍ଚୁ ପାକ[୧] ॥ ୧୫ ॥
ସୁଧା ସିନ୍ଧୁରେ କିବା ମହା ମୀନ ।
ବୁଡ଼ ତରଙ୍ଗେ ହୋଇଗଲା ଲୀନ ॥ ୧୬ ॥
ରାଧା ନୟନ ମଧୁପ ଉଡ଼ିଲା ।
କୃଷ୍ଣ ବଦନ ପଙ୍କଜେ ପଡ଼ିଲା ॥ ୧୭ ॥
କୃଷ୍ଣ ମନମୀନ ନେତ୍ର ବଡ଼ଶୀ ।
ପ୍ରାପ୍ତେ ଆଣିଲା ଝଟତି ଆକର୍ଷି ॥ ୧୮ ॥
ତାହାଁ ନେତ୍ର ପ୍ରିୟା ଅଙ୍ଗେ ପଡ଼ିଲା ।
ଶୋଭା ରସ ତରଙ୍ଗରେ ଜଡ଼ିଲା ॥ ୧୯ ॥
ସେହି କାଳରେ ଚତୁର ନୟନ
କେହି କାହାକୁ ନ ଛାଡ଼ ଅୟନ ॥ ୨୦ ॥
ମଧ୍ୟେ ଜଗା ଜଗି ହୋଇ ରହିଲେ ।
ନିଜ ସ୍ଥାନକୁ ଲେଉଟି ନଇଲେ ॥ ୨୧ ॥
କଞ୍ଜେ ଭ୍ରମର ଚନ୍ଦ୍ରେ ଚକୋର ।
ରାଧା ମାଧବ ନୟନ ଚତୁର ॥ ୨୨ ॥
ସୁଧା ପାନ ମଧୁପାନ ପାଇଲେ ।
ମହା ଆନନ୍ଦେ ନିମଗ୍ନ ହୋଇଲେ ॥ ୨୩ ॥
ଏହି ଅବକାଶ ପାଇ ମଦନ ।
ଆଲମ୍ବନ ପାଇ ରାଧା ମଦନ ॥ ୨୪ ॥

---

୧. ଚଞ୍ଚୁ ଜାକ ( ପୋଥି ପାଠ )

ଭ୍ରୂ ଛଳେ କୁସୁମ ଶରାସନ ।
ଜଠା କଟାକ୍ଷ ବାଣରେ ସନ୍ଧାନ ॥ ୨୫ ॥
ନିଜ ମୋହନ ଅସ୍ତ୍ର ମନ୍ତ୍ର କଲା ।
ବିଶ୍ୱମୋହନ ଅଙ୍ଗେ ପକାଇଲା ॥ ୨୬ ॥

ସେହି ସମୟେ ପଞ୍ଚଶର ଶ୍ରେଣି ।
କୋଟି କୋଟି ସେ ବୃଷ୍ଟିକଲା ପୁଣି ॥ ୨୭ ॥
ଏଣୁ କୃଷ୍ଣ ହୃଦୟୁ ଦ୍ରବିଗଲା ।
ରାଧା ଲାବଣ୍ୟ ସୁଧାରେ ଜଡ଼ିଲା ॥ ୨୮ ॥

ଏଣୁ ଚେତନା ଧଇର୍ଯ୍ୟ ଧଇଲା ।
ତହିଁ ମାର ଶର କୋଟି ପଡ଼ିଲା ॥ ୨୯ ॥
ସ୍ତମ୍ଭ ରୋମାଞ୍ଚ କମ୍ପ ଶିତ୍କାର ।
ଅନୁଭବରୁ ଶିଥିଳିତ କର ॥ ୩୦ ॥

ବେଣୁ ପଡ଼ିଲା ହସ୍ତ ସ୍ରସ୍ତ ହୋଇ ।
କାମ ବିକାରେ ଅବଧାନ ନାହିଁ ॥ ୩୧ ॥
ପୁଣି ଚେତନା ଅବଲମ୍ବ କରି ।
କରେ ମୁରଲୀ ନ ଦେଖି ମୁରାରି ॥ ୩୨ ॥

ଥିଲା ଦକ୍ଷିଣେ ଦକ୍ଷିଣା ସୁଦକ୍ଷା ।
ଅଲକ୍ଷରେ ନେଲା ତାହା ବିଶାଖା ॥ ୩୩ ॥

ଧନିଷ୍ଠିକା ଯେ ପୃଷ୍ଠଭାଗେ ଥିଲା ।
ରଙ୍ଗେ ରଙ୍ଗ ଦେବୀ କି ନେଇ ଦେଲା ॥ ୩୪ ॥

କୃଷ୍ଣ ଚିନ୍ତିଲେ ମୁରଲୀ ପତନ ।
ଅଚେତନ କଲା ମୀନକେତନ ॥ ୩୫ ॥

ଏହିକ୍ଷଣି ମୁରଲୀ କରେ ଥିଲା ।
ପ୍ରିୟା ଯୋଗରୁ ଅନ୍ତରିତ ହେଲା ॥ ୩୬ ॥

ଏହି ବିବେଚନା କରି ମୁରାରି ।
ମନେ କଲେ ତାଙ୍କ ଚୌର ଚାତୁରୀ ॥ ୩୭ ॥

ହେନ୍ତି ସମୟୁ ପ୍ରେମଭାବେ ମତ୍ତି ।
ଦେଇ ପୁରୁଷୋତ୍ତମ ନରପତି ॥ ୩୮ ॥

କୃଷ୍ଣ ଅନଙ୍ଗଭୀମ ଖ୍ୟାତ ଚିତ୍ତ ।
ଭଣେ ଅନଙ୍ଗଭୀମ ନୃପ ନାଥ ॥ ୩୯ ॥

———

# ନବମ ଛାନ୍ଦ

ରାଗ—ବରାଡ଼ି

( ଆଷାଢ଼ ଶୁକ୍ଳ ବାଣୀ )

ଏଥୁଅନନ୍ତରେ ଶୁଣ ସୁରସ
କୃଷ୍ଣ ରାଧା ରସେ ହୋଇ ଅବଶ
ଶ୍ରୀକରୁ ମୋହନ ବଂଶୀ ପଡ଼ିଲା
ମନୋଜ ରସରେ ଚିତ୍ତ ଜଡ଼ିଲା
ସେ ଚେତନା ପାଇ
ବୋଇଲେ ସଖିରେ ମୁରଲୀ କାହିଁ ॥ ୧ ॥

ଏତେ ବୋଲୁ ଧରି ଲଳିତା ବାସ
ବୋଲନ୍ତି କରି ମନ୍ଦ ମନ୍ଦ ହାସ
କାହୁଁ ଶିକ୍ଷାକଲ ଏ ପରିହାସ
ବଂଶୀ ଲୁଚାଇ ମନ୍ଦ ମନ୍ଦ ହସ
ଏତେ ହୋଇ କି ନା
ମୁରଲୀ ହଅରେ ମୀନ ନୟନା ॥ ୨ ॥

ଲଳିତା ବୋଇଲେ ଶୁଣ ମାଧବ
ବଂଶୀ ଯେ ନେଲା ତୁମ୍ଭେ ଯାହା ଧବ
ଏ ବାଣୀ ଶୁଣି ଶ୍ୟର ଗୁଡ଼ ଦେଲେ
ଗାନ୍ଧବା ମୁଖେ ନେତ୍ର ପକାଇଲେ
ସ୍ମିତ ନେତ୍ରାନ୍ତରେ
ମାଗିଲେ ମୁରଲୀ କର ପ୍ରସାରେ ॥ ୩ ॥

ଗାନ୍ଧବା ସ୍ୱଦର୍ଭ ଗର୍ଭ ବଚନ
ବୋଇଲେ କାହିଁ ତେଜିଲ ଏ ବନ
ଚିତ୍ତ ହରଣ ପାଷା[1] ଶିକ୍ଷା କଲ
ଢପଣତ ବଧି ତାକୁ ହରିଲ
ଯାକୁ ହୃଦେ ଧରି
ହଜାଇଲ ତାକୁ ମାଗ ଶ୍ରୀହରି ॥ ୪ ॥

---

୧. ଦକ୍ଷା ( ପୋଥି ପାଠ )

କେ ବୋଲେ ସଖି ଏ ନାଗର ବର
ମୁରଲୀ ଲୁଚିଏ ବନ ଭିତର
ଆମ୍ଭଙ୍କୁ କପଟ ବାଦ ଲଗାଇ
ବାସ ଫେଡ଼ିବେ ଯେ ବୋଲିବ ନାହିଁ
ସେ ଜୀବନ ଧନ
ମୁରଲୀ ତାଙ୍କଠାରୁ ନୋହେ ଭିନ୍ନ ॥ ୫ ॥

କେ ବୋଲଇ ସେ ନେତ୍ର ତାରକା
ପ୍ରାଣରୁ ଅଧିକା ପ୍ରିୟା ରାଧିକା
ସାକ୍ଷାତ ଯେ ହରି ନେଇଛି ଚିତ୍ତ
ମୁରଲୀ ହରିବା କଉଁ ବଚିତ୍ର
ତାକୁ ଧରି ଯାଇ
ପାରିଲେ ମୁରଲୀ ବାଦ ଲଗାଇ ॥ ୬ ॥

କେ ବୋଲଇ ତୁଚ୍ଛା ବଂଶ କଣ୍ଟକ
ଅଗ୍ର ମୂଳ ନାହିଁ ଖଣ୍ଡ କୀଚକ
ଅସାର ଗର୍ଭ ପର ମର୍ମଭେଦୀ
ବହୁ ଛିଦ୍ରବନ୍ତ ଅତି ପ୍ରମାଦୀ
ସେ ନୀରସ ତୃଣ
ଭୁମ୍ଭରି କରେ ତାର ସବୁ ଗୁଣ ॥ ୭ ॥

କେ ବୋଲଇ ତାକୁ ଯେବେ ଦେଖନ୍ତୁ
ଏତେ ବେଳ ଯାଏ କମ୍ପା ରଖନ୍ତୁ
ଯାହା ଧ୍ୱନି ଗୁରୁଗଣ ଗଞ୍ଜନ
ଯେ ପତିବ୍ରତ ତରୁ ପ୍ରଭଞ୍ଜନ
ସେ ଶ୍ରୁତି ରଞ୍ଜନ
ହେଲେହେଁ ବେଗେ କରନ୍ତୁ ଭଞ୍ଜନ ॥ ୮ ॥

କେ ବୋଲଇ ମୋର ଭାଗ୍ୟ ଦଶିଲା
ବଂଶୀଧର କରୁ ମୁରଲୀ ଗଲା
ନିରନ୍ତର ଧରେ ମୋହନ ନାମ
ଶୁଣିଲେ ମନରେ ଉତ୍କଟ କାମ
ଚିତ୍ତ ଛନ୍ନ ଛନ୍ନ
ଯାଶୋଦା ବାସ ବ୍ୟସନ ଅଶନ ॥ ୯ ॥

ପଣହାପେ ବାସ ଫେଡ଼ିବା ଆଶେ
ବଂଶୀ ଗୁପତ କରି ପୀତବାସେ
ବସନ ଖୋଳିବୁ ମୁରଲୀ ପାଇଁ
ତୁମ୍ଭ ମନୋରଥ ପୂରିବ ନାହିଁ
ହେ ଚତୁରମଣି
ତୁମ୍ଭ ଚାତୁରୀ କେ ପାରିବ ଜାଣି ॥ ୧୦ ॥

କେ ବୋଲେ ମୁରଲୀ ପାଇବା ପାଇଁ
ରାଧା ସ୍ତନ ହେମ ଶମ୍ଭୁଙ୍କୁ ଛୁଇଁ
ନମସ୍ତେ କରିବ ଯାହା ନାମରେ
ମୁରଲୀ ପାଇବ ତାହାର ଠାରେ
ବର ମାଗ ଯାଇଁ
ପୂଜା କରରେ କମଳ ଦେଇ ॥ ୧୧ ॥

ବୋଲନ୍ତି ହରି ହେ ଗୋପ ନାଗରି
ଅପୂର୍ବ ତୁମ୍ଭ ବଞ୍ଚନା ଚାତୁରୀ
ନୟନୁଁ ପର ଯଉଁ ମନ ଧନ
ହେଳାରେ ହରଇ ତୁମ୍ଭ ନୟନ
ନେତ୍ର ଅନ୍ତ କୁନ୍ତ
ହୃଦୟୁ ଖଣ୍ଡିକ ରଖ ପ୍ରଶସ୍ତ[୧] ॥ ୧୨ ॥

ନୀବୀ ବନ୍ଧ କଟି ମେଖଳା ବନ୍ଧ
କେଶ ବନ୍ଧ କୁଚ କାଞ୍ଚୁଲି ଛନ୍ଦ
ଶୃଙ୍ଗାର ରସ ଚଉଷଠି ବନ୍ଧ
କାମ କେଳିରେ ବାହୁ ପାଶ ବନ୍ଧ
ଏତେ ବନ୍ଧେ ଚୋର
ହେଲେହେଁ ଗାଢ଼ ଧୃତ ଧନ ହର ॥ ୧୩ ॥

କାହାର ଫେଡ଼ିଲେ ନୀବୀ ବନ୍ଧନ
କାହାର କାଢ଼ିଲେ ସ୍ତନ ବସନ
କାହା ଉତ୍ତରୀ ଛଦ୍ମେ କଲେ ଭଗ୍ନ
କାହାକୁ ବୋଇଲେ ଦେଖି ଜଘନ
ଏହି ଭାବେ ତହିଁ
ମୁରାରି ମୁରଲୀ ପାଇଲେ ନାହିଁ ॥ ୧୪ ॥

---

୧. ଶସ୍ତ ( ପୋଥି ପାଠ )

ବଣାଖା କରୁ କୁନ୍ଦବଲ୍ଲୀ ନେଲ
ଚନ୍ଦ୍ରା ତାହା ମଧୁମଣ୍ଡକ ଦେଲା
ଧନଷ୍ଟା ଥିଲା ଅଞ୍ଚଳେ ଲୁଚାଇ
ଗୋବିନ୍ଦ କରେ ସମର୍ପିଲା ନେଇ
ଯେଷ ବନମାଳୀ
ଅନ୍ତ ପାଇଲ କ ନେତ୍ର ପିଚୁଳୀ ॥ ୧୫ ॥

ସଖୀ ସମକ୍ଷେ ରାଧା କର ଧରି
ମଦନ କୁଞ୍ଜରେ ପ୍ରବେଶ ହରି
ଉଚ୍ଛୁକ ଭାବେ ଆଲିଙ୍ଗନ କଲେ
ଆତୁରେ ମଧୁରାଧର ଚୁମ୍ବିଲେ
ଆନ୍ଦୋଳା ଉପରେ
ବସିଲେ ଦମ୍ପତ୍ତି ପ୍ରେମ ଭାବରେ ॥ ୧୬ ॥

ବ୍ୟଞ୍ଜନ ଚାମର ଜଳ ତାମ୍ବୁଲ
ଖାଦ୍ୟ ପରିଖ ଯେତେକ ସକଳ
ଯେ ଯାହା ସେବାରେ ରହିଲେ ତହିଁ
ରାଧାକୃଷ୍ଣ ଭାବେ ନିବିଷ୍ଟ ହୋଇ
ପ୍ରିୟା ମନ ଜାଣି
କହନ୍ତି ଗୋବିନ୍ଦ ବିନୟ ବାଣୀ ॥ ୧୭ ॥

ଗାନ୍ଧର୍ବୀ ମୁରାରି ପ୍ରେମ ଶୃଙ୍ଖଳା
ମନରେ ଅନବରତେ ବିଗ୍ରହ
ଗୁରୁ ଚରଣାରବିନ୍ଦ ବନ୍ଦନ
କରି ବାସୁଦେବ ନୃପ ନନ୍ଦନ
ଏ ଭାବରେ ଭଣି
ପୁରୁଷୋତ୍ତମ ଦେବ ନୃପମଣି ॥ ୧୮ ॥

———

# ଦଶମ ଛାନ୍ଦ

ରାଗ—ଆଶାବସ୍ତ[1]

ଏଥୁ ଅନନ୍ତରେ ସଖୀଗଣ
ବଗୁର କରଣ ପୁଣ ପୁଣ
ବୃନ୍ଦା ଅନୁମତେ ବୋଇଲେ ହେ ଶୁକ୍ଷା ପ୍ରାଣେଶ୍ୱରୀ ପ୍ରିୟ ବାଣୀ ଭଙ୍ଗ ।
ଜାଣି ଶୁକାଙ୍ଗନା
ବୋଇଲା ହେ ଶ୍ୟାମ ଆଲିଙ୍ଗନା
ଜନ୍ମୁକ ଚୋ ସଖି ବ୍ରଜାଙ୍ଗନା ॥ ୧ ॥

ଛାଡ଼ ଛାଡ଼ ପ୍ରିୟ ଆଲିଙ୍ଗନ ।
ସତ୍ୱର ସକଳ ସଖୀଗଣ
ନିଜ କୁଣ୍ଡ ସ୍ନାନ ତପନ ପୂଜନ ସାରି ଯିବା ନିଜ ନିକେତନ ।
ଶୁଣି ଶୁକ୍ଷା ବାଣୀ
ରସେ ବିଷ ମିଶାଇଲା ଜାଣି
ଚପଳେ ଉଠିଲେ ରମଣୀ ॥ ୨ ॥

ମନୋରଥ ପୂର୍ଣ୍ଣ ସୁରତରୁ
କୃଷ୍ଣଙ୍କୁ ମଣିଲେ ସୁରତରୁ
ରସ ଆବେଶେ ଅବଶ କର ପାଦ ଚଳ ନ ପାରନ୍ତ ପୁରତରୁ ।
ସେ ଯେ ରସବନ୍ତୀ
ସଙ୍ଗରେ ଜିଣିଲେ ରତି ପତି
ଶିଥିଳ ଗତି ଚଞ୍ଚଳ ମତି ॥ ୩ ॥

ପ୍ରିୟ ସଖୀ ପ୍ରିୟ ବାଣୀ ଶୁଣି
କୁଞ୍ଜରୁ ରମଣୀ ମଣି ମଣି
ବାହାର ହୋଇଲେ କି ଏ ଦନ୍ତାବଳ କରୁ କେଳି ହେମ କମଳିନୀ ।
ତେତେବେଳ ଛବି
ବର୍ଣ୍ଣନା କରିବ କଉଁ କବି ।
କରି ମୁଖ ସୁର ଗୁରୁ କବି ॥ ୪ ॥

୧. ଅସାବରୀ ପରଜ ରାଗ ( ପୋଥି ପାଠ )

ନିରସ ବଦନ ସୁଧା ଧର ।
ତମ ବସନେ କି ସୁଧାଧର ।
କରଜେ ପାଟଳ ସ୍ତନ ଜମ୍ବୁ ଫଳ ଦ୍ରବେ କି ହେମ ବସୁଧା ଧର ।
ଲାଜେ ତର ତର
ଟଳେ ଚେତଶ୍ରବ ସୁରତର ।
ଗୋଡ଼ାଇ ବାନ୍ଧଇ ରତି ଦର ॥ ୫ ॥

ଖସୁଛି କନ୍ଧରୁ ନୀଳ ବାସ ।
ସୁରତ ଶ୍ରମ ଅନିଳ ବାସ
ସ୍ଖଳିତ ଚରଣ ଅରୁଣ ନେତ୍ର କି ବରୁଣ ସୁତାରେ ନୀଳବାସ ।
ପୁଣି ମଧୁପାନ
ଆବେଶ ଶେଷରୁ ଛନ୍ନ ମନ ।
ଘୂର୍ଣ୍ଣିତ ନୟନ ଥନ ଥନ ॥ ୬ ॥

ଛନ୍ଦହୋଇ କଣ୍ଠେ ମଣିବନ୍ଧ ।
ଲମ୍ବିଛି ପୃଷ୍ଠକୁ ବେଣୀବନ୍ଧ ।
କୃଷ୍ଣ ନୟନ ମନ ମୀନ ବନ୍ଧନେ ଝଷକେତନକୁ ବେଣୀ ବନ୍ଧ ।
ମୁଖେ ସ୍ୱେଦ ବିନ୍ଦୁ
ଅମିୟ ତନ୍ତ ମଣ୍ଡିତ ଇନ୍ଦୁ ।
ଫିଟିଲକ ରାହୁ ଗ୍ରାସ ଫାନ୍ଦୁ ॥ ୭ ॥

ବାମ କରେ ଧରି କେଶ ପାଶ ।
ଦକ୍ଷିଣେ ଶିଥିଳ ନୀବୀ ବାସ ।
ଏକ ଏକ କରେ ଏକାବେଳେ ବାନ୍ଧି ନୋହିବାରୁ ମନ୍ଦ ହସ ହସ ।
ତାହା ଦେଖି ସାରି
ଏ କାମ ମୋହନ ପ୍ରତିହାରୀ ।
ରତି ସମରେ କି ରଖିପାରି ॥ ୮ ॥

ମାର ସମରେ ପୃଷ୍ଠକୁ ଗଲ ।
ଜଙ୍ଘ ବନ୍ଧେ ଫିଟି ପଳାଇଲ ।
କେଶ କଟୀବାସ ଦୁହିଙ୍କି ହିଁ ଏହି ଦୋଷରୁ ବାନ୍ଧିବା ଯୋଗାଇଲ ।
ବକ୍ଷ ହାର ଶ୍ରେଣୀ
ନିରନ୍ତର ଯେଉଁ କଣ୍ଠ ମଣି ।
ସେହି ନ ରହିଲେ କାଳ ଜାଣି ॥ ୯ ॥

ଖସିଛି କଟୀ ମେଖଳା ବନ୍ଧ
କାମ କେଶରୀ ଶୃଙ୍ଖଳା ବନ୍ଧ ।
ଚମକାଇ ଛୁଟି ପୁଣି ରତି ପତି ଚେତାଇ ସୁରତି ଖେଳା ବନ୍ଧ ।
ଗତି ଟଳ ଟଳ
ମାର ମଦ ଭରେ ମତ୍ତ ଭ୍ରୋଳ ।
ସଂଭ୍ରମେ ଲେଉଟନ୍ତି ସଖୀକୁଳ ॥ ୧୦ ॥

ଦୂରୁ ଦେଖି ପ୍ରିୟ ସହଚରୀ
ନିଜ ନିଜ ସେବା ପର ସରି ।
ପରିହାସ ଛଳେ ବୋଲନ୍ତି ସକଳେ ଆମ୍ଭଙ୍କୁ ପାରିବୁ ପରିହରି ।
ଛାଡ଼ ଏ ଯତନ
ମନାକ୍ଷେ ମନ୍ଦ ନ କର ମନ ।
ଗୂଢ଼େ ରଖି ଶ୍ୟାମ ପ୍ରେମ ଧନ ॥ ୧୧ ॥

ମାର ଦ୍ରବ ଶର କରଜର ।
ଘାତ ସହି ସହି ଜର ଜର ।
ତଥାପି ଦୃଢ଼ ଉନ୍ନତି ନ ଛାଡ଼ିଲେ ଧନ୍ୟ ମହତ୍ତ୍ୱ ଏ ଉରଜର ।
ନୃତ୍ୟ କଲି ଜାଣି
ମଦନ ଉତ୍ସବେ ନାସାମଣି ।
ଘାତ କଲେ ଜାତି ନଖ ଶ୍ରେଣୀ ॥ ୧୨ ॥

ଖଣ୍ଡେ ଦୂରୁ ସିନା ଧନୁଶର ।
ଫେରି ଫେରି କାଳେ ପରିକାର
ତନୁ ଜନ୍ମା ଜନ୍ତ କାଳେ କ୍ଷୁରିକାଣ୍ଡ ନଖର ଦଶନ ପ୍ରତିକାର ।
ଧନ୍ୟ ପ୍ରାଣ ସହି
ରତି ରଣାଙ୍ଗଣେ ରହି ରହି
ଥିଲୁ ମାର ଶର ଘାତ ସହି ॥ ୧୩ ॥

କାମକେଳି ରତି ରଣ ବ୍ରଣ
ତନୁରେ କଲେ ହେ ଆବରଣ ।
ସାଙ୍ଗ ଗଣ୍ଠିଆକୁ ଗଣ୍ଠି ଲୁଗ୍ରଇଲି ପ୍ରାୟେ ଜାଣୁ ତାହା ସଖୀଗଣ ।
ପୁଣି ଗତାଗତ
କର ବୋଲନ୍ତିରେ କୁନ୍ଦ ଦନ୍ତ ।
ଆଜ କି ରତି ପତି କି ଖ୍ୟାତି ॥ ୧୪ ॥

ଏତେ ବୋଲନ୍ତି ପ୍ରିୟ ସଖୀଗଣ ।
ବ୍ୟଜନ ବ୍ୟସନ ଆଭରଣ ।
ବାସ ଜଳ ମୁଖବାସ ମାଳ ବାସ ଯେବେ କଲେ ନିଜ ସେବା ମାନ ।
ବୃଷଭାନୁ ବାଳୀ
ହସି ବୋଇଲେ ରେ ଗୁଣଶାଳୀ ।
ହାତରେ ଦେଉଛ ନାଗବଲ୍ଲୀ ॥ ୧୫ ॥

କୁଞ୍ଜରେ ମିଳି ସଜନୀ ଗଣ ।
ଖୋଜି ଆଣି ନାନା ଆଭରଣ ।
ସଖି ଅଙ୍ଗେ ଦେଇ କହିଲେ ବନଯୁଁ ଥାଇ ନ ଥିଲେ ହେବ ଏ ଦୂଷଣ ।
ଛଳି ବୋଲେ ପୁଣ ।
ଧନ୍ୟ ଗୋ ବିବେକ ପ୍ରଭୁ ପଣ ।
ଉପକାରୀ ପ୍ରତକାରୀ ଗୁଣ ॥ ୧୬ ॥

ଦୂର ହେଲି ଚରେ ଅଙ୍ଗୀକାର ।
ଗୁଡ଼ିଲ ମନ୍ଦାକ୍ଷକୁ ଆଦର ।
ଅଙ୍ଗରେ ଅନଙ୍ଗ ସଙ୍ଗରେ ଯୁଝିବା ମାନଙ୍କୁ ହି କଲୁ ସତକାର ।
ଆରେ ରମାବର ।
ଜଘନକୁ ଦେଲୁ ଗୁରୁ ଚିର ।
ଉରଜକୁ ତାର ତର ହାର ॥ ୧୭ ॥

ରତନ ବଳୟେ ବାହୁ ବେଶ ।
ହେମ ରସନାରେ କଟି ଦେଶ ।
ଅଧରେ ତାମ୍ବୁଳ କର୍ଣ୍ଣରେ କୁଣ୍ଡଳ ଦେଇ କଲୁ ବହୁ ପଉରୁଷ ।
ଆରେ ପ୍ରାଣ ସହି
ଥିଲେ ରତି ରଣେ ଦୁଃଖ ସହି ।
ପୂର୍ଣ୍ଣକାମ କଲୁ କାମ ଦେଇ ॥ ୧୮ ॥

ନିଜ ରତି ଶ୍ରମ ଅବସରେ
ମଦନ କୁତୁକ ଅବଶରେ
ଜଳ କେଳି ରଙ୍ଗେ ପ୍ରିୟାଗଣ ସଙ୍ଗେ କୃଷ୍ଣ ମିଳେ ପ୍ରିୟା ନାମ ସରେ ।
ବୃଷଭାନୁ ବାଳ
ପ୍ରିୟ ସଙ୍ଗେ ରଙ୍ଗେ ଜଳକେଳି ।
କରନ୍ତି ନିଜ କୁଣ୍ଡରେ ମିଳି ॥ ୧୯ ॥

କମଳାକରେ କମଳାକରେ
କମଳାକରେ କମଳାକରେ
କମଳନୟନ କମଳ ନୟନ ମୁଦ୍ରିତ କଲେ କଙ୍କଣ ଭରେ ।
ପୁଣି ଶ୍ୟାମ ଘନ
କରେ କରେ ବୃଷ୍ଟି ଘନ ଘନ
କ୍ଳନ୍ନ ମୁଖ ନେତ୍ର ପ୍ରିୟା ଗଣ ॥ ୨୦ ॥

ସମ୍ବରେ ଅମ୍ବର ସମ୍ବରଣ ।
ପ୍ରକଟିଲା ଜଳକ୍ଷେପ ରଣ ।
ମନ୍ଦାକ୍ଷେ ମନ୍ଦାକ୍ଷ ପରିବୃତ୍ତ କଲେ କରେ କରି କର ଆବରଣ ।
ଏହି ଅନୁମାନ
ସମ୍ବର ତର ଅମ୍ବରେ ଲୀନ ।
କରେ ଘନରସ ବରଷଣ ॥ ୨୧ ॥

ମୁଖ ସଙ୍କୋଚୁଛି ସ୍ତନେ ଲୀନ ।
ପୃଷ୍ଠରେ ପଡ଼ଇ ଘନ ବନ ।
ହରି ସଙ୍ଗରେ ସଙ୍ଗରେ ହାରିଲେ କି ଚନ୍ଦ୍ରଚୂଡ଼ ହେମ ଶମ୍ଭୁଗଣ ।
ତହିଁ ପୁଣ ପୁଣ
× × ×
କଲେ ଜଳ କ୍ଷେପ ଘଟବ ରଣ ॥ ୨୨ ॥

ଅପ୍ସଖି ପ୍ରତି ଗଣ୍ଡ କରି ।
ହରଷରେ ନରଶାରେ ଭରି ।
ରୁନ୍ଧିଲେ ପ୍ରିୟଙ୍କୁ ଏକା ଏ କାଳରେ ସାହା ହେଲି ଜାନୁ ସରି ବାରି ।
କଟୀ ସରି ମରେ
ଚାଲଛି ପ୍ରବେଶ ରାମା ବରେ ।
ଗାଛବା ବୁଡ଼ିଲେ ପ୍ରେମଭରେ ॥ ୨୩ ॥

ମୁଖ ନେତ୍ର କରମ୍ବୁଜା କରେ ।
ପ୍ରଫୁଲ୍ଲ ସହସ୍ର କର କରେ ।
ସ୍ତନ କମଳ ମୁକୁଳ ନ ଫୁଟିଲେ ଏକା ବଧୂକର ସ୍ପରଶରେ ।
ସେ ଯେ ଅଳିଗଣ
କରେ କରେ କରି ଆଲିଙ୍ଗନ ।
ତମାଳେ କି ସେ ନିଆଳିଗଣ ॥ ୨୪ ॥

କେଳି ଭରେ କର କୋକନଦ ।
ମଦଭରରେ ନେତ୍ର କୋକନଦ ।
ଅଳି କେଳି ଛଳେ ତରଳେ ତରଳ କୋକନଦ ପୁଣି କୋକନଦ ।
ସେ ଯେ ତରଙ୍ଗିଣୀ
କୃଷ୍ଣ କେଳି ରସ ସୁରଙ୍ଗିଣୀ ।
କବା ନେତ୍ର କଞ୍ଜ ତରଙ୍ଗିଣୀ ॥ ୨୫ ॥

ତହିଁ ନ ଦେଖିଣ ମାଳୋପୃଳ ।
କାମିମା ନୟନ ମାଳୋପୃଳ ।
ଶ୍ୟାମ ବପୁ କାନ୍ତି ମଣି ଶପୁ ପଡ଼ ଭଯ୍ୟେ କମ୍ପିତ କ ମାଳୋପୃଳ ।
ସେ ଯେ କମଳମା
କେବେ ହେଁ ନୁହଇ କମଳମା ।
ପ୍ରସବେ ଯେସନ କମଳମା ॥ ୨୬ ॥

ରମା ବଦନ ଛବ ସାରସ ।
ଜଳେ ଚଞ୍ଚଳ କବ ସାରସ ।
କେଳି କଳି ଛଳେ କମ୍ପିତ ତରଳେ ବସାରସ ପୁଣି ବସାରସ ।
ଏହ୍ନ ରୂପେ ତହିଁ
ପ୍ରେମ ତରଙ୍ଗିଣୀ ଗଲ୍ଲ ବହ୍ନ ।
ଗାନ୍ଧର୍ବୀ ବୋଲେ ପିଚକା କାହ୍ନିଁ ॥ ୨୭ ॥

କୃଷ୍ଣ ମନୋରଥ ଗତ ଜାଣି ।
ବୃନ୍ଦାବଣି ସଖୀ ବାଣୀ ଶୁଣି ।
ଜଳ ଯନ୍ତ୍ର ନଳ ହେମ ମୃଣାଳୀ ସେ ଗାନ୍ଧର୍ବୀ ନକଟେ ଦେଲେ ଆଣି ।
କର ପଦ୍ମ ଧରି
ଏକ ଏକ ପ୍ରିୟ ସହଚରୀ ।
ଜଳ ଉତ୍ସର୍ଗେ ରୁନ୍ଧିଲେ ହରି ॥ ୨୮ ॥

କୃଷ୍ଣ ଯୋଗବଳ ମହିମାରୁ ।
ଏକ ଅନେକ ତା ସ୍ୱଭାବରୁ ।
ବହୁତ ପ୍ରକାରେ ବହୁତ ପ୍ରେୟସୀ ମୁଖେ ଜଳଯନ୍ତ୍ର ବକ୍ଷେପରୁ ।
ପୁଣି ପ୍ରିୟା ଗଣ
ମୁଖ ପଦ୍ମନେତ୍ର ନମୀଳନ ।
କରଣ ହାରିଲେ ପୁଣ ପୁଣ ॥ ୨୯ ॥

ହସି ବୋଇଲେ ଲଳିତା ସଖୀ ।
ଅଇଲ ସହସ୍ର କର ଦେଖି ।
ଜଳ କେଳି ଛଳେ ସହସ୍ର କରଙ୍କୁ ଦେଖିଲ ଟିକ ପୂରାଇ ଆଖି ।
ଆରେ ବ୍ରଜାଙ୍ଗନା
ସତ୍ୱରେ ରବି ପୂଜନ ମନା ।
ହୋଇ ଗୁଡ଼ କେଳି ଶଳମ୍ଭନା ॥ ୩୦ ॥

ଜଳ କେଳି ରସ ନିବର୍ତ୍ତାଇ ।
ଦିନକର ପୂର ପାଶେ ଯାଇଁ ।
ଅର୍ଚ୍ଚନା ପ୍ରକାର ନାନା ଉପଚାର ଆଚରିଲେ ସବ ସଖୀଥାଇ ।
କୃଷ୍ଣ କପଟରେ
ବିପ୍ର ରୂପେ ତାଙ୍କ ନିକଟରେ ।
ପ୍ରବେଶ ହୋଇ ବୋଲନ୍ତି ଧୀରେ ॥ ୩୧ ॥

କୁଶ ତାମ୍ର ଜଳ ପାତ୍ର ପାଣି ।
ଯେଉଁ ବୋଲନ୍ତିରେ ହେମ ଗାଣି ।
ଶତପତ୍ର ପ୍ରିୟ ପୂଜା କରିବ କ ଶ୍ରୀବତ୍ସ ଶତପତ୍ର ନେଣି ।
ଏତେ କହି ହରି
ପୂଜକ ବିପ୍ର ଗୃହୁଶ୍ୱ ଧରି ।
ବସିଲେ ଆସନ ଦୃଢ଼କରି ॥ ୩୨ ॥

ରାଧାସଙ୍ଗେ ସବ ସଖୀ ଯାଇ ।
ନାନା ଉପଚାର ପାଶେ ଥୋଇ ।
ବେଢ଼ି ବସିଲେ ସକଳ ସହଚରୀ ବିପ୍ରଙ୍କୁ ବଳୟାକାର ହୋଇ ।
ପୁଣି କୃଷ୍ଣ ତହିଁ
ବସେ ମନ୍ଦ ମନ୍ଦ ସ୍ମିତ ହୋଇ ।
ବୋଲନ୍ତି ସମସ୍ତ ମୁଖ ଚାହିଁ ॥ ୩୩ ॥

କାହାର କେତେ କାମରେ ଇଚ୍ଛା ।
ପୂରିବ ଆଜ ସବୁରି ବାଞ୍ଛା ।
କପଟ ନ କର ମାନସ ବିଷୟର ସଂକଳ୍ପରେ ନୋହୁଁ ବିଚକ୍ଷଣା ।
ଆରେ ଗୋପ ବାଳା
ଗୋପନ ନ କର କାମ ବାଳା ।
ଯହିଁପାଇଁ କର ବନ ଲୀଳା ॥ ୩୪ ॥

ଏହି ରୂପେ ବହୁ ପରିହାସ-
ବାଣୀ କହି ତହିଁ ଶୀତବାସ
ବାସର ପତି ପୂଜାକରି ବୋଇଲେ ପୁଣି କର ପ୍ରଭୁ ସବୁ ଆଶ ।
ଶୁଣି ହସ ହସ
ହୋଇ ବୋଲେ ହଅ ଏ ଅଶିଷ ।
ମୁରଲୀ ନ ବୋଲୁ ଆସ ଆସ ॥ ୩୫ ॥

ମନ୍ଦ ସ୍ମିତ ପ୍ରେମ ଅବଲୋକ ।
ନାନା ଭାବଭଙ୍ଗୀ ପରିପାକ ।
ତୋଷି ହରି ମନ ତପନ ପୂଜନ ସାରି ପାଶୋରିଲେ[1] କାମ ଶୋକ ।
ବୃଷଭାନୁ ବାଳୀ
ସଙ୍ଗତେ ଘେନ ସକଳ ଆଳୀ ।
ସଦନେ ପ୍ରବେଶ ଗୁଣଶାଳୀ ॥ ୩୬ ॥

ସୁଜନ ମାନଙ୍କୁ ପ୍ରଣିପାତ—
କରି କହୁଅଛୁ ଏତେ ମାତ୍ର ।
ମୋ ଦୋଷମାନ ସମାନ କରି ଘେନ ନ ଘେନ ଛମାନ ମାନ ମାତ୍ର ।
ଦ୍ରବ୍ୟା ଦ୍ରବ୍ୟ ଗୀତ
ନର ବାଣୀ ଦେବ ବାଣୀ ଯୁତ ।
କେ ଅବା ପ୍ରଶସ୍ତ ଅପ୍ରଶସ୍ତ ॥ ୩୭ ॥

ବିଜୟ ନଗର ନରପତି ।
ପୁରୁଷ ଉତ୍ତମ ନାମ ଖ୍ୟାତି ।
କ୍ଷତ୍ରିୟାଂଶ ଗଙ୍ଗବଂଶ ଅବତଂସ ନୃପ ସାରସ ବାସ ରସ ପତି ।
ରାଧା କୃଷ୍ଣ ଭାବ
ମନେକରି ଭବାର୍ଣ୍ଣବ ନାବ ।
ଭଣିଲେ ଅନଙ୍ଗ ଭୀମ ଦେବ ॥ ୩୮ ॥

ସମାପ୍ତ

---

୧. ପାସୋରିଲେ ( ପୋଥି ପାଠ )

TBP—155 ( DCA )—1,000—10-11-73